# ହେ ମହାଜୀବନ !

ଶ୍ରୀ ବ୍ରଜନାଥ ରଥ



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

ହେ ମହାଜୀବନ ! ☐ ଶ୍ରୀ ବ୍ରଜନାଥ ରଥ ☐ ସୁନହଟ - ବାଲେଶ୍ୱର-
୭୫୬୦୦୨ ☐ ପ୍ରକାଶକ : ସହଦେବ ପ୍ରଧାନ-ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦ
ବିହାରୀ-କଟକ-୭୫୩୦୦୨ ☐ ଲିପିକାର : ବିଶ୍ୱଶ୍ରୀ ପ୍ରେସ, ଫକୀରମୋହନ
ସେନାପତି ରୋଡ଼-ବାଲେଶ୍ୱର-୩ ☐ ପ୍ରଥମ ପ୍ରକାଶ : ମହାବିଷୁବ ସଂକ୍ରାନ୍ତି
୧୪-୪-୧୯୯୧ ☐ ପ୍ରଚ୍ଛଦ ଶିଳ୍ପୀ : ଅସିତ ମୁଖାର୍ଜି ☐ ମୂଲ୍ୟ-ପଚିଶ ଟଙ୍କା



HE MAHA JEEVAN ☐ A collection of Poems ☐
Sri Brajanath Rath ☐ Sunhat, Balasore - 756002
☐ Publisher : Sri Sahadev Pradhan, Friends Publishers
Binod behari - Cuttack - 753002 ☐ Printer : Biswasri
Press - Phakirmohan Senapati Road : Balasore -
756003 ☐ First Publication : 14-4-91 ☐ Cover Design :
Asit Mukharjee ☐ Price : Rupees Twenty Five only.

# କିଛି କହିବାର ଅଛି

ଆଜକୁ ଠିକ୍ ଏକତିରିଶ ବର୍ଷ ତଳେ ଏହି ମହାବିଷୁବ ସଂକ୍ରାନ୍ତି ଦିନ ମୋର ଯେଉଁ ପ୍ରଥମ କବିତା ସଂକଳନ "ମରୁଗୋଲାପ" ପ୍ରକାଶ ପାଇ ମୋତେ ଓଡ଼ିଆ କାବ୍ୟ-ଜଗତରେ ପରିଚିତ କରାଇଥିଲା, ତାହାକୁ ଆଲୋକକୁ ଆଣିଥିଲେ ଆଜିର ଏହି କବିତା ସଂକଳନର ପ୍ରକାଶକ "ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ"। ସେତେବେଳେ ମାତ୍ର ଅଳ୍ପ କେତେ ବର୍ଷ ଆଗରୁ ଦୁଇଜଣ ଉତ୍ସାହୀ ଯୁବ-ପ୍ରକାଶକ ବନ୍ଧୁ ଜଗନ୍ନାଥ ରଥ ଓ ସହଦେବ ପ୍ରଧାନଙ୍କ ଯୁଗ୍ମ ଉଦ୍ୟମରେ ଏହି ପ୍ରକାଶନ ସଂସ୍ଥା ବିନୋଦବିହାରୀ ଛକର ଏକ କ୍ଷୁଦ୍ର କୋଠରୀରେ ଆରମ୍ଭ ହୋଇଥାଏ। ସେତେବେଳକୁ ସେମିତି କିଛି ବିଶେଷ ଉଲ୍ଲେଖଯୋଗ୍ୟ ପୁସ୍ତକ ପ୍ରକାଶନ ମଧ୍ୟ ଏ ସଂସ୍ଥା ପକ୍ଷରୁ ହୋଇ ନଥାଏ। ଏମିତି ଏକ ସମୟରେ ଦିନେ ସନ୍ଧ୍ୟାବେଳେ କବିବନ୍ଧୁ ରବି ସିଂଙ୍କ ସହ ଯାଇ ଏହି ଦୁଇ ପ୍ରକାଶକ ବନ୍ଧୁଙ୍କ ସହ ଖୁସିଗପ କରୁଁ କରୁଁ 'ଚା-ପାନ ବିରତି' ଭିତରେ ବନ୍ଧୁ ରବିବାବୁ ବାଢ଼ି ବସିଲେ ମୋର ପ୍ରଥମ କବିତା ସଂକଳନ ପ୍ରକାଶର ଅନୁରୋଧ, ଏବଂ ତା ସହିତ ତାଙ୍କ ସ୍ୱଭାବ ସୁଲଭ ଆବେଗଭରା ଉଦାତ୍ତ କଣ୍ଠରେ ଆବୃତ୍ତି କରି ଶୁଣାଇଲେ ମୋର କେତେକ କବିତାର କିଛି ପଂକ୍ତି। ବାସ୍, କଣ ଭାବିଲେ କେଜାଣି ଉଭୟ ଜଗନ୍ନାଥବାବୁ ଓ ସହଦେବବାବୁ ସଙ୍ଗେ ସଙ୍ଗେ ରାଜି ହୋଇଗଲେ ଏବଂ କିଛିଦିନ ପରେ ୧୯୬୦ମସିହା ଏପ୍ରିଲ ୧୪ତାରିଖ ମହାବିଷୁବ ସଂକ୍ରାନ୍ତିର ଶୁଭ ଅବସରରେ ପ୍ରକାଶ ପାଇଲା ମୋ ତରୁଣ କବି-ମାନସର ପ୍ରଥମ ସଂକଳିତ ରୂପ।

ସେତେବେଳେ ବହିକୁ ବୋର୍ଡ ବନ୍ଧାଇ କରି ସୁଦୃଶ୍ୟ ପ୍ରଚ୍ଛଦ ସହ ପ୍ରକାଶ କରିବା ଥିଲା ଏକ ବିଳାସ, ଏକ ଆଭିଜାତ୍ୟ। ଅଳ୍ପ କେତୋଟି ପ୍ରକାଶନ ସଂସ୍ଥା ଲେଖକ ଓ ପୁସ୍ତକର ଗୁରୁତ୍ୱ ଅନୁସାରେ ଖଣ୍ଡେ ଦୁଇଖଣ୍ଡ

ବହୁ ବୋର୍ଡ଼ ବନ୍ଧାଇ କରି ବଜାରକୁ ଛାଡ଼ୁଥିଲେ । ତାହା ଆଜି ଭଳି ଏକ ମାମୁଲି ପରମ୍ପରାରେ ପରିଣତ ହୋଇ ନଥିଲା । ଆଧୁନିକ ରୁଚିସମ୍ପନ୍ନ ପ୍ରଚ୍ଛଦ ଆଙ୍କିବା ପାଇଁ ଆଜି ଭଳି ଶିଳ୍ପୀ ମଧ୍ୟ ନଥିଲେ । ଶିଳ୍ପୀବନ୍ଧୁ ଅସିତବାବୁ, ଅସୀମବାବୁ, ଉଦୟବାବୁ ଇତ୍ୟାଦି ନୂଆ ନୂଆ ଡେଣା ଫିଟାଉଥାନ୍ତି । ଏପରି ଏକ ସମୟରେ ଏହି ପ୍ରକାଶନ ସଂସ୍ଥାର ବନ୍ଧୁ ଦୁଇଜଣ ସୁଦୃଶ୍ୟ ପ୍ରଚ୍ଛଦ ସହ ବୋର୍ଡ଼ ବନ୍ଧାଇ କରି ମୋ କବିତା ସଂକଳନଟି ପ୍ରକାଶ କରିଥିଲେ । ମୋର ଯେତେଦୂର ମନେହୁଏ ତାହାହିଁ ଥିଲା ତାଙ୍କ ସଂସ୍ଥା ପକ୍ଷରୁ ପ୍ରକାଶିତ ପ୍ରଥମ ଶୋଭନୀୟ କବିତା ସଂକଳନ । ତାପରେ ଏଭଳି ସୁଦୃଶ୍ୟ କରି ପ୍ରକାଶ କରିଥିଲେ କବିବନ୍ଧୁ ରବି ସିଂଙ୍କ କାବ୍ୟଗ୍ରନ୍ଥ 'ଶିଥିଳ ବଲ୍‌ଗା' । ଏହା ଆଜି ମୋ ପାଖରେ ଇତିହାସ ହୋଇଗଲାଣି । ବନ୍ଧୁ ଜଗନ୍ନାଥ ରଥ ଏହି ପ୍ରତିଷ୍ଠାନରୁ ବିଦାୟ ନେଇ ଆଉ ଏକ ପୁସ୍ତକ ପ୍ରତିଷ୍ଠାନ ଗଢ଼ିବା ପରେ ପୃଥିବୀରୁ ମଧ୍ୟ ବିଦାୟ ନେଇ ଗଲେଣି । ତାଙ୍କର ସ୍ମୃତି ମୋ ପାଖରେ ଚିରଦିନ ଜୀବନ୍ତ ଓ ଅମ୍ଳାନ ହୋଇ ରହିଯାଇଛି ।

ବନ୍ଧୁ ସହଦେବବାବୁଙ୍କ ଏହି ପୁସ୍ତକ ପ୍ରତିଷ୍ଠାନ ଦୀର୍ଘବର୍ଷର ବ୍ୟବଧାନ ପରେ ଆଜି ସୁନାମ ଓ ଆଭିଜାତ୍ୟର ଶୀର୍ଷରେ । ଏକତିରିଶ ବର୍ଷ ଭିତରେ ସାହିତ୍ୟର ଅନ୍ୟାନ୍ୟ ବିଭାଗର ବହୁ ଉଲ୍ଲେଖଯୋଗ୍ୟ ପୁସ୍ତକ ସହ ସେ ପ୍ରକାଶ କରିଛନ୍ତି ବହୁ ତରୁଣ ଓ ପ୍ରବୀଣ କାବ୍ୟଶିଳ୍ପୀଙ୍କର ଅନେକ କାବ୍ୟଗ୍ରନ୍ଥ । ଓଡ଼ିଶାର ଅଧିକାଂଶ ପ୍ରକାଶକ ଯେତେବେଳେ ଆଧୁନିକ କବିତାର କାଟ୍‌ତି ନାହିଁ ବୋଲି ଆଳଦେଖାଇ ବ୍ୟାବସାୟିକ ଲାଭପଣ୍ଠି ଦୃଷ୍ଟିରୁ କାବ୍ୟଗ୍ରନ୍ଥ ପ୍ରକାଶରେ ଏକାନ୍ତ ବୀତସ୍ପୃହ, ସେତେବେଳେ ନିରାଶାର ଧୂସର ମରୁଭୂମିରେ 'ଫ୍ରେଣ୍ଡସ୍ ପବ୍ଲିଶର୍ସ'ହିଁ ସବୁଜ ଆଶାର ଓଏସିସ୍ । ସହଦେବବାବୁ କବି ନହେଲେବି କବି ଓ କବିତା ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଯୋଗୁଁ ଏହି ନେତିବାଚକ ଭାବଧାରାକୁ ଏକ ଆହ୍ୱାନ ରୂପେ ଗ୍ରହଣ କରି ପ୍ରକାଶ କରିସାରିଲେଣି ବହୁ ଆଧୁନିକ କବିତାଗ୍ରନ୍ଥ । ଓଡ଼ିଶାରେ ତାଙ୍କ ପ୍ରତିଷ୍ଠାନହିଁ ଏ ଦିଗରେ ଏକ ଉଲ୍ଲେଖଯୋଗ୍ୟ ରେକର୍ଡ଼ ସୃଷ୍ଟି କରିଛି ବୋଲି କୁହାଯାଇପାରେ । ବହୁମୁଖୀ ଓ ବହୁରୂପୀ ଆଜିର ଓଡ଼ିଆ କବିତାକୁ ଉପଯୁକ୍ତ ମାନ୍ୟତା ଦେବାରେ, ଏବଂ ତରୁଣତର ବହୁ କବିଙ୍କ କବିତା ସଂକଳନ ପ୍ରକାଶ କରି ସେମାନଙ୍କୁ ଯଥେଷ୍ଟ ଉତ୍ସାହିତ କରିବା ଦିଗରେ, ତଥା ପ୍ରବୀଣ କାବ୍ୟଶିଳ୍ପୀମାନଙ୍କ ସମ୍ମୁଖରେ ପ୍ରତିଷ୍ଠାର ଦୁର୍ଗତୋରଣ ଉନ୍ମୋଚନ କରିବାରେ "ଫ୍ରେଣ୍ଡସ୍ ପବ୍ଲିଶର୍ସ"ର ଅଗ୍ରଣୀ ଭୂମିକା ଭୁଲିବାର ନୁହେଁ ।

ସେହି ସମ୍ଭ୍ରାନ୍ତ ପୁସ୍ତକ ପ୍ରତିଷ୍ଠାନ ଦୀର୍ଘ ଏକତିରିଶ ବର୍ଷର ବ୍ୟବଧାନ ପରେ ପ୍ରକାଶ କରୁଛନ୍ତି ମୋର ଏହି ଷଷ୍ଠ କାବ୍ୟ-ସଂକଳନ 'ହେ ମହାଜୀବନ !' ସେଦିନ 'କବିତାର ବଡ଼ଦାଣ୍ଡ'ରେ ନୂଆ କରି ଗୋଡ଼ ପକାଉଥିବା ଏହି ଅନାମଧନ୍ୟ ତରୁଣ କବିକୁ ଯେଉଁ ଅଖ୍ୟାତ ପ୍ରକାଶନ ସଂସ୍ଥା ପ୍ରଥମେ ସ୍ୱୀକୃତି ଦେଇଥିଲା, ସେ ଆଜି ଓଡ଼ିଆ ପ୍ରକାଶନ ଜଗତରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ବାଛିନେବାକୁ ସମର୍ଥ ହୋଇଛି ; ଆଉ ମୁଁ କିଛି ନହେଲେବି ବିଗତ ତିରିଶ ବର୍ଷର କାବ୍ୟ-ସାଧନା ଭିତରେ ଆଜିର ଓଡ଼ିଆ କାବ୍ୟ-ପାଠକମାନଙ୍କ ପାଖରେ ଏକାନ୍ତ ଅପରିଚିତ ନୁହେଁ । ତେଣୁ ଏହି ଅବକାଶରେ ମୋର କବିଜୀବନର ଉନ୍ମେଷକାଳୀନ ପ୍ରଥମ ପ୍ରକାଶକ ବନ୍ଧୁ ଶ୍ରୀ ସହଦେବ ପ୍ରଧାନଙ୍କୁ ସକୃତଜ୍ଞ ସ୍ମରଣ କରୁଛି ଏବଂ ଧନ୍ୟବାଦ ଜଣାଉଛି ।

ଗୋଟିଏକୁ ଛାଡ଼ିଦେଲେ ଏହି ସଂକଳନ ସଂଲଗ୍ନ ସମସ୍ତ କବିତାର ରଚନାକାଳ ଗତ ଦଶନ୍ଧି (୧୯୮୦-୯୦) । ଏ କବିତାଗୁଡ଼ିକ ଭିତରେ ଗୋଟିଏ ପ୍ରଚ୍ଛନ୍ନ ଓ ଅନ୍ତର୍ନିହିତ ଭାବସତ୍ତାର ସ୍ପନ୍ଦନ ଯେ କେହି ସଚେତନ କାବ୍ୟ ପାଠକ ସନ୍ଧାନ କରି ପାରିବେ । ତାହା ହେଉଛି ଜୀବନ ପ୍ରତି, ମଣିଷ ପ୍ରତି ଏବଂ ଏଦେଶର ମାଟି-ପାଣି-ପବନ ପ୍ରତି ମୋର ମମତ୍ୱବୋଧ, ଯାହା ମୋ କାବ୍ୟ-ଚେତନାର ନାଭିପଦ୍ମ ବା ପ୍ରାଣକେନ୍ଦ୍ର । ଯେଉଁ ବୈଚିତ୍ର୍ୟମୟ ମଣିଷ-ଜୀବନ ତାର ବହୁବର୍ଣ୍ଣିଳ ରୂପ ନେଇ ଅନାଦିକାଳରୁ ଏ ପୃଥିବୀରେ ଆତଯାତ ହେଉଛି, ତାକୁ ସମ୍ବେଦନଶୀଳ ମନ ଓ ହୃଦୟ ନେଇ ମୁଗ୍ଧ ନେତ୍ରରେ ମୁଁ ଦେଖିଛି । ସେଥିପ୍ରତି ଏକ ଆଶାବ୍ୟଞ୍ଜକ, ଅସ୍ତିସୂଚକ ଦୃଷ୍ଟିଭଙ୍ଗୀ ସର୍ବଦା ପୋଷଣ କରିଛି । ଯେଉଁ ବିଶ୍ୱକର୍ମା ମଣିଷ ସୃଷ୍ଟିର ନାୟକ, ସଭ୍ୟତାର ବାହକ, ଏବଂ ସଂସ୍କୃତିର ଗାୟକ, ଯେଉଁମାନେ ପ୍ରତିଦିନ ଜୀବନ-ସଂଗ୍ରାମରେ ଯୁଝିଯୁଝି ପୃଥିବୀକୁ ନୂଆରୂପ ଦିଅନ୍ତି ଏବଂ ସମସ୍ତ ପ୍ରକାର ଧ୍ୱଂସବାଦୀ ଓ ମୃତ୍ୟୁମୁଖୀ ପ୍ରତିକ୍ରିୟାକୁ ପରିହତ କରି ସୃଷ୍ଟି ଓ କୃଷ୍ଟିର ଅକ୍ଷୟବୀଜ ବପନ କରନ୍ତି, ଚିରକାଳ ଅନନ୍ତ ଜୀବନର ଜୟଗାନ କରନ୍ତି, ନିରାଶାର ଧୂସର ବାଲୁଚରରେ ଆଶାର ସବୁଜ ଦୂବଟିଏ ରୋପିଦିଅନ୍ତି ଏବଂ ସକଳ ନିରାନନ୍ଦକୁ ହଜମ କରି ଆନନ୍ଦର ଜୟଧ୍ୱନି କରନ୍ତି, ମୁଁ ସର୍ବଦା ସେମାନଙ୍କ ବିରୋଧରେ ହେଉଥିବା ସମସ୍ତ ପ୍ରକାର ଚକ୍ରାନ୍ତ ଓ ଯୁଦ୍ଧଘୋଷଣାକୁ ପଣ୍ଡ କରିବା ପାଇଁ ଏବଂ ସେମାନଙ୍କ ସମ୍ମୁଖରେ ଛିଡ଼ାକରି-ଯାଉଥିବା ସକଳ ପ୍ରକାର ବିଭେଦର ଦୁର୍ଭେଦ୍ୟ ପ୍ରାଚୀରକୁ ଭାଙ୍ଗିବା ପାଇଁ ମୋର ଲେଖନୀକୁ ଯଥାଶକ୍ତି ଉତ୍ତୋଳନ କରିଛି । 'ହେ ମହାଜୀବନ !'

ସେହି ଭବସନ୍ଧିର ଏକ ସୂକ୍ଷ୍ମତମ କାବ୍ୟିକ ପରିପ୍ରକାଶ । ତେଣୁ ଏଥିରୁ କେହି ତଥାକଥିତ-ଆଧୁନିକ ବୌଦ୍ଧିକ ବିକୃତିର ଅଦ୍ଭୁତ ଫସଲ ଖୋଜିବାକୁ ବା ସଜ୍ଜଜିଆ ନାସପ୍ରେମର ଆଇଁଷିଆ କମ୍ପିତ ଗଜଲ ଶୁଣିବାକୁ ଚେଷ୍ଟାକଲେ ନିରାଶ ଓ ବ୍ୟର୍ଥ ହେବେ । ଏହା ଆପଣାର ସ୍ୱାର୍ଥସିଦ୍ଧି ପାଇଁ କୌଣସି ଦଣ୍ଡଧାରୀ ଶାସକର ବା ଖଣ୍ଡାଧାରୀ ଶୋଷକର ସପକ୍ଷରେ ଭଣିତାକର ସ୍ତୁତିଗାନ ନୁହେଁ, ବରଂ ଏହା ମଣିଷର ସଂଗ୍ରାମ ଓ ଶାନ୍ତି, ଜୀବନ ଓ ସ୍ୱାଧୀନତାର ସପକ୍ଷରେ ଏକ କାବ୍ୟିକ ଦଲିଲ୍ ବା ସ୍ତବଗାଥା ।

ଆଜି ଏହି ସଂକଳନର ପ୍ରକାଶ ମୁହୂର୍ତ୍ତରେ ମୁଁ ସେହିମାନଙ୍କୁ ସଶ୍ରଦ୍ଧ ସ୍ମରଣ କରୁଛି, ଯେଉଁମାନେ ମୋ କବିତାର ଅନୁରାଗୀ ପାଠକ, ଉତ୍ସାହୀ ଗ୍ରାହକ ଏବଂ ମୋର ଶୁଭେଚ୍ଛୁ ବନ୍ଧୁ । ଯେଉଁ ପତ୍ରିକାର ସଂପାଦକମାନେ ବିଭିନ୍ନ ସମୟରେ କବିତାଗୁଡ଼ିକୁ ପ୍ରକାଶ କରି ଶତଶତ ପାଠକଙ୍କ ସଶ୍ରଦ୍ଧ ଦୃଷ୍ଟିକୁ ଆଣିବାରେ ସାହାଯ୍ୟ କରିଛନ୍ତି ସେମାନେବି ମୋର ଧନ୍ୟବାଦାର୍ହ । ପୁନଶ୍ଚ ଧନ୍ୟବାଦର ପାତ୍ର ସେହି ପ୍ରଥିତଯଶା ଶିଳ୍ପୀବନ୍ଧୁ ଅସିତ୍ ମୁଖାର୍ଜୀ, ଯିଏ ଏ ଗ୍ରନ୍ଥର ମର୍ମବାଣୀକୁ ଆପଣାର ଅପୂର୍ବ କଳା-କଳ୍ପନାରେ ରସାଣିତ କରି ପ୍ରଚ୍ଛଦପଟରେ ରେଖା ଓ ରଙ୍ଗର ପୃଷ୍ଠରେ ଜୀବନ୍ତ କରି ତୋଳି ଧରିଛନ୍ତି । କାଳର ତୁଳାଦଣ୍ଡରେ ଏ ଗ୍ରନ୍ଥ କେତେଦୂର ତୁଳିତ ହୋଇ ପାରିବ ଜାଣେନା, କିନ୍ତୁ ଆଗ୍ରହୀ ପାଠକଙ୍କ ମନର ମାନଦଣ୍ଡରେ ଯଦି ଏହା ପରିମାପ କରାଯାଇ ପାରିବ ଏବଂ ରସଲିପ୍ସୁ ଗ୍ରାହକଙ୍କର ହୃଦୟରେ କିଞ୍ଚିତ୍ ଆଲୋଡନ ସୃଷ୍ଟି କରି ପାରିବ ତାହାଲେ ଆପଣାକୁ ଧନ୍ୟ ମଣିବି ।

ସୁନହଟ-ବାଲେଶ୍ୱର
୧୪-୪-୧୯୯୧

# କବିତା କ୍ରମ

## କବି ବ୍ରଜନାଥ ରଥଙ୍କ ସୃଷ୍ଟି-ସମ୍ଭାର :

**କବିତା ସଙ୍କଳନ :**

୧ ।। ମରୁଗୋଲାପ (୧୯୬୦)
୨ ।। ନିଜସ୍ୱ ସଂଳାପ (୧୯୬୯)
୩ ।। ମରୁଗୋଲାପ ଓ ଅନ୍ୟାନ୍ୟ କବିତା (୧୯୭୨)
 ( ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ )
୪ ।। ନୀରୋଗ ପ୍ରତିବାଦ (୧୯୭୭)
୫ ।। ସଭ୍ୟତାର ମୁହଁ (୧୯୭୯)
୬ ।। ମନର ମାନଚିତ୍ର (୧୯୮୩)
 ( ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କୃତ )
୭ ।। କାଁଚକା ଘର (कांचका घर) (୧୯୭୭)
 ( ନିଜସ୍ୱ କବିତାର ହିନ୍ଦୀ ରୂପାନ୍ତର )

**ସଂକଳିତ ଗ୍ରନ୍ଥ :**

୧ ।। ଧରିତ୍ରୀ ( କବିତା ସଂକଳନ - ୧୯୫୬ )
୨ ।। ସମସାମୟିକ ଓଡ଼ିଆ ପ୍ରେମ କବିତା (୧୯୭୨)
୩ ।। କନ୍‌ହେଇନାମା (୧୯୭୬)
 ( ତରୁଣ କଥାକାର ୰ କନ୍‌ହେଇଲାଲ ଦାସଙ୍କ ସ୍ମାରକ ଗ୍ରନ୍ଥ )
୪ ।। ରଘୁନାଥ ଦାସ ପରିକ୍ରମା (୧୯୮୭)
 ( ପ୍ରଗତିଶୀଳ ଚେତନାର ଯଶସ୍ୱୀ କବି ରଘୁନାଥ ଦାସଙ୍କ ସ୍ମାରକ ଗ୍ରନ୍ଥ )
୫ ।। କାନ୍ତକବି ସାହିତ୍ୟାଲେଖ୍ୟ (୧୯୯୦)
 ( କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଶତବାର୍ଷିକ ଶ୍ରଦ୍ଧାର୍ଘ୍ୟ )
୬ ।। ରକ୍ତତୀର୍ଥ ସ୍ମାରକୀ (୧୯୯୦)
 ( ବିପ୍ଳବୀ ମହାନାୟକ ବାଜୀରାଉତ ଓ ସହଯୋଦ୍ଧାମାନଙ୍କ
 ଆତ୍ମବଳୀଦାନର ୭୫ ବର୍ଷ ପୂର୍ତ୍ତି ଉପଲକ୍ଷେ ସ୍ମାରକ ଗ୍ରନ୍ଥ )
୭ ।। ଓଡ଼ିଆ ଶିଶୁ-ସାହିତ୍ୟ ପରିକ୍ରମା (୧୯୯୧)
୮ ।। Phakirmohan : His Life & Literature (1984)

**ପ୍ରକାଶ ଅପେକ୍ଷାରେ :**

୧ ।। ଲଘୁଟିକ ( ବ୍ୟଙ୍ଗକବିତା ସଙ୍କଳନ )
୨ ।। ଶିଶିରକଣାରେ ସୂର୍ଯ୍ୟ ( ଏକପଦୀ ସଙ୍କଳନ )
୩ ।। ଗଡ଼ ଗଡ଼ ଗଲି ବଲ୍ ( ଶିଶୁ କବିତା ସଙ୍କଳନ )
୪ ।। ବନ୍ଦିତ ଆକାଶ ( ଅନୁବାଦ କବିତା ସଙ୍କଳନ )

# ହେ ମହାଜୀବନ !

ହେ ମହାଜୀବନ, ଚଳିଗଲୁ କେବେ ନା
ଜଳିଗଲୁ ଦହଣ ସୂର୍ଯ୍ୟ ଭଳି
ଲିଭିନ ଅଛୁ ବସିନା କେବେ
ଦୂରଆକାଶେ ନା ଯାଉଛ ଚାଲି ।

ମାଟିରୁ ଜନମ ନେଉଛୁ କେବେ ନା
ଉଡ଼ି ଗଗନ ଘେରିଛ ନୀଡ଼
ନଦ ଲହରୀ ଗଣିଛ କେବେ ନା
ଭାଙ୍ଗି ତଟରେ ଯାଉଛ ତୀର ।

କେଉଁଠେ କେଉଁଠେ ଫୁଟିଛ ଅଛୁ
ବହିଲା ସିନ୍ଧୁ ଝଞ୍ଜାବାତ
ଗାଉଛି ଜନମ ଲଭିଛୁ କେବେ ନା
ବନ୍ଧ୍ୟା ନିଶାରେ ଯାଉଛୁ ଝଡ଼ ।

ଆକାଶେ ଉଡ଼ୁଛୁ, ପାଣିରେ ଭାସୁଛୁ
ଧରାରୁ ଅଛୁ ଜୀର୍ଣ୍ଣ ଛନ୍ଦ
ତୁମରି ଦାନରେ ଦୀପ୍ତି-ନୟନ
ସୃଷ୍ଟି-ସ୍ପନ୍ଦନ ବହନ ଛନ୍ଦ ।

# ଓଟ

ହେ ମରୁସାଗରର ଜୀବନ୍ତ ଜାହାଜ !
କେତେ କାଳ ଏହିପରି
ଚାଲୁଥିବ ବୋହି ବୋହି
ମରୁଯାତ୍ରୀ ବଣିକର ବୋଝ ??

ସହି ସହି ବାଲିଝଡ଼
ଶାଣିତ ବର୍ଚ୍ଛାର ମାଡ଼
ବିଷୁବ ସୂର୍ଯ୍ୟର
କେତେକାଳ, କହ କେତେକାଳ
ଅବଶ ଶିଥିଳ ପାଦେ
ଚାଲୁଥିବ ମୌନମୁଖେ
ଠେଲି ଠେଲି ବାଲିର ତରଙ୍ଗ
କେତେ ରାତ୍ରି ସନ୍ଧ୍ୟା ଓ ସକାଳ ??

ଜଠରେ କ୍ଷୁଧାର ବହ୍ନି
ପିଠିରେ ତ ପଣ୍ୟବାହୀ ବୋଝ ;
ଗୁରୁଭାର ବୋହି ବୋହି
ମେରୁଦଣ୍ଡ ଗଲାଣିତ ନଇଁ
କୁଞ୍ଚିତ ପାହାଡ଼ ଭଳି
ଉଠିଲାଣି କୁଜ ।

## ହେ ମହାଜୀବନ ! ୨

ନାସାରନ୍ଧ୍ରୁ ଛୁଟେ ତୁମ
ଲାଭା ଭଳି ଗରମ ନିଃଶ୍ୱାସ,
ଜୁଳୁଜୁଳୁ ଆଖି ତଳେ
ଦିଗନ୍ତପ୍ରସାରୀ ମରୁ—
            ପ୍ରାନ୍ତର ଯେ ଜଳେ
ଖସିପଡ଼େ ସମ୍ମୁଖରେ
            ଧୂ-ଧୂ ଜ୍ୱଳନ୍ତ ଆକାଶ ॥

ପିଠିରେ ପଣ୍ୟର ବୋଝ
ବୋହିଲେ ବି ତୁମେ
ସେଥିରେ କି ଯାଏ ଆସେ ତୁମ ?
ବଣିକର ଲାଭାଂଶର ତାଲିକାରେ କେବେ
ଲେଖାହେବ ନାହିଁ ତୁମ ନାମ ।

କେବଳ ତୁମର କାମ
ନିପଟ ନିର୍ବୋଧ ଭାବେ
ଓଜନିଆ ବୋଝକୁ ବୋହିବା ;
କେବଳ ତୁମର କାମ
ନିଜର ଯନ୍ତ୍ରଣା ଏବଂ
ନିଜ ଦୁଃଖ ନିଜେହିଁ ସହିବା ॥

ଏଇମିତି କୁହ ତୁମେ
କୁହ କୁହ ଆଉ କେତେ କାଳ
            ଅନ୍ତହୀନ ମରୁର ସାଗରେ
ଘୁଲୁଥିବ ହେ ମରୁ-ଜାହାଜ !
ବୋହି ବୋହି ଲାଭଖୋର ବଣିକର ବୋଝ
            ନିର୍ବିକାରେ ଆଉ ନିର୍ବିଘ୍ନରେ ??

ନିଜେ ସହି ବାଲିଝଡ଼,
ବର୍ଷାମାଡ଼ ଶାଣିତ ସୂର୍ଯ୍ୟର
କୁହ ତୁମେ ଆଉ କେତେକାଳ
ସଂଗୋପନେ ନିଜ ପେଟ ତଳେ
ଦେଉଥିବ ଲାଭଖୋର ବଣିକକୁ ଅଭୟ ଆଶ୍ରୟ,
ଆପଣାକୁ ଆପେ କରି
ଦବାଗ୍ନିର ତଳେ ତଳେ କ୍ଷୟ ??

ଏଥର ନିଜର ଦୁଃଖ
ବୁଝିବାକୁ ଚେଷ୍ଟାକର ନିଜେ
ଚେଷ୍ଟାକର ବୁଝିବାକୁ
ଆପଣାର ଦୟନୀୟ ଦୁଃଖର କାରଣ ;
ଜାଣିରଖ, ବିନା ବାଧା, ବିନା ପ୍ରତିବାଦେ
ସବୁକିଛି ସହିବାର
ଅନ୍ୟନାମ ଅଟଇ ମରଣ ॥

ନିସ୍ପୃହତା, ମୂର୍ଖତାର ଅଟେ ନାମାନ୍ତର ;
ତେଣୁ ଆଜି ଫିଙ୍ଗିଦିଅ
ପୃଷ୍ଠଦେଶୁ ବଣିକର ପଣ୍ୟବାହୀ ବୋଝ
ଶୋଷଣର ଯେତେ ଗୁରୁଭାର !
ଏବଂ ଲଙ୍ଘିଚାଲ
ଦୁର୍ଲଂଘ୍ୟ-ଦୁସ୍ତର
ସୁଦୂର ଦିଗନ୍ତ ବ୍ୟାପୀ
ଧୂ-ଧୂ-ମରୁର ପ୍ରାନ୍ତର ॥ □□

## କୁକୁଡ଼ା

ପକ୍ଷୀଟିଏ ହୋଇ
ଉଡ଼ି ନ ପାରିବାର ଦୁଃସହ ଦୁଃଖ
ଓ ଅସହ୍ୟ ଆତ୍ମଗ୍ଲାନିରେ
ନିରନ୍ତ ଜର୍ଜରିତ ତୁମର ହୃଦୟ !!
ଅଥଚ
ସକଳ ଦୁଃଖକୁ ଚୃପିରଖି
ତୁମେ ଡାକ ଦିଅ
ଶୁଭ୍ର ସତେଜ ସକାଳର,
ଏବଂ ଉନ୍ମୋଚନ କର
ଉଦୟ-ସୂର୍ଯ୍ୟର ଲୋହିତ ଯବନିକା ॥

ତୁମରି ବଜ୍ରକଣ୍ଠର ଡାକରେ
ଖଣ୍ଡ ଖଣ୍ଡ ହୋଇ ଖସିପଡ଼େ
ଅନ୍ଧକାରର ଉଦ୍ଧତ ମୀନାର,
ଏବଂ ଜାଗିଉଠେ,
ଆଦିଗନ୍ତ ଆକାଶ-ପୃଥିବୀ ॥

ସକାଳର ଶୁଭସ୍ୱପ୍ନ ଦେଖୁଥିବା
ଖିଆଲି ମଣିଷର ନିଦୁଆ ଆଖିରେ
ହଠାତ୍ ତୁମେ ଭରିଦିଅ
ଜୀବନ-ସଂଗ୍ରାମର ରୁଢ଼ ବାସ୍ତବତା,
ଏବଂ ବୁଣିଦିଅ
ସମ୍ଭାବନାମୟ ଆଗାମୀର ଉଜ୍ଜ୍ୱଳ ରଶ୍ମି ॥

କିନ୍ତୁ ଠିକ୍ ସେତିକିବେଳେ
ତୁମପାଇଁ ଶାଣିତ ହୁଏ
ନିଷ୍ଠୁର ଘାତକର ରକ୍ତସ୍ନାତ ସୁତୀକ୍ଷ୍ଣ ଛୁରିକା,
ଜଳିଉଠେ
ଅସଂଖ୍ୟ ଲୋଲଜିହ୍ୱ ଲାଲସାର ଉଗ୍ର ବହ୍ନିଶିଖା,
ଏବଂ ନଇଁଆସେ
ହିମ-ଶୀତଳ ମୃତ୍ୟୁର
ଭୟଙ୍କର କରାଳ ଛବି ।।

ମୁଁ ଲକ୍ଷ୍ୟ କରୁଛି
ପାଦରେ ତୁମର ରାଜକୀୟ ଚଲ,
ମୁଁ ଦେଖୁଛି
ମସ୍ତକରେ ତୁମର ସମ୍ରାଟର ମୁକୁଟ,
ମୁଁ ଶୁଣୁଛି
କଣ୍ଠରେ ତୁମର ବଜ୍ରଗମ୍ଭୀର ସ୍ୱର ।।

ଅଥଚ କେଉଁ ଅସମ୍ଭବ ଅସହାୟତାରେ
ଆଉଟି ପାଉଟି ହୁଏ
ସଦାଶଙ୍କିତ ତୁମର ହୃଦୟ ?
ଏବଂ କେଉଁ କରୁଣତାରେ ଆକୁଳ ହୁଏ
ଆର୍ତ୍ତ-ଆତୁର ତୁମର ଚକ୍ଷୁ ??

କାତିବନ୍ଧା ପାଦରେ
ତୁମେ ଯେବେ ବ୍ୟାପୃତ ହୁଅ
ରକ୍ତକ୍ଷୟୀ ସଂଗ୍ରାମରେ,

ଏବଂ କ୍ଷତ ବିକ୍ଷତ ହୋଇ ଯେତେବେଳେ
ଯୁଦ୍ଧଭୂମିରେ ଟଳିପଡ଼
ବା କାତର ହୁଅ
ମର୍ମଭେଦୀ ଅସହ୍ୟ ଯନ୍ତ୍ରଣାରେ,
ସେତେବେଳେ
ଏକ ଆସୁରିକ ଉଲ୍ଲାସରେ ନାଚି ନାଚି
କରତାଳି ଦିଏ ଦର୍ଶକମଣ୍ଡଳୀ,

ଅଥଚ ତୁମେ ବୁଝିପାରନା
କାହାର କୂଟ ନିର୍ଦ୍ଦେଶରେ
ତୁମର ଏ ରକ୍ତପାତ !
କାହାର ଅଶୁଭ ଇଙ୍ଗିତରେ
ତୁମର ସ୍ୱଜନ-ନିଧନର ଏ ଯଜ୍ଞାହୁତି !
ଏବଂ କାହାର ତର୍ଜନୀ ସଂକେତରେ
ଭ୍ରାତୃହତ୍ୟାର ଏ ଶୋଣିତ-ତର୍ପଣ !!

ତୁମର ଆତ୍ମବଳି ବା ବିଜୟ
ତୁମର ଗୌରବ ନୁହେଁ,
କେବଳ ପ୍ରପଞ୍ଚକର
ସ୍ୱାର୍ଥ ପ୍ରଣୋଦିତ ଲାଳସା-ବେଦୀରେ
ଏ ତୁମର ରକ୍ତସ୍ନାତ ଲୋହିତ ଅର୍ଘ୍ୟ ।।

ଚେତନା ଥାଇ ବି ଉଡ଼ି ନ ପାରିବାର
ମର୍ମଭେଦୀ ଦୁଃସହ ଦୁଃଖରେ ଜର୍ଜରିତ
ହେ ଅସହାୟ ନିର୍ବୋଧ ପକ୍ଷୀ !
ଏଥର ବୁଝିବାକୁ ଚେଷ୍ଟାକର
ନିଜର ନିର୍ବୋଧତା,
ଏବଂ ଏ ଆତ୍ମଘାତୀ ଯୁଦ୍ଧର ଗୋପନ ଉଦ୍ଦେଶ୍ୟ ।

## ହେ ମହାଜୀବନ ! ୭

ଅନ୍ତହୀନ ଆକାଶର
ନୀଳନୀଳ ସାଗର ହିଲ୍ଲୋଳେ
ମେଲିବାକୁ ଚେଷ୍ଟାକର
ଯୁଗ ଯୁଗରୁ ସଂକୁଚିତ
ନିଜର ଅଥର୍ବ ଡ଼େଣା ।
ଶକ୍ତି ସଞ୍ଚୟ କର
ସଞ୍ଚୟ କର ସାହସ ।

ଆଉ କାତରତା ନୁହେଁ ବା ଆତୁରତା ନୁହେଁ
ନୁହେଁ ଆତ୍ମହତ୍ୟା ବା ସ୍ୱଜନ ନିଧନର ସଂଗ୍ରାମ ।
ବୀରୋଚିତ ଦର୍ପରେ ଜାଗିଉଠି
ଝାଡ଼ିଦିଅ ଆପଣାର ପକ୍ଷ,
ଉତ୍ତୋଳନ କର ନିଜ ମସ୍ତକର ଚୂଳ,
ଛିନ୍ନ କର ମୂଢ଼ତାର ଜାଲ,
ଏବଂ ଆପଣାର ଦୃପ୍ତ କଣ୍ଠସ୍ୱରେ
ଭାଙ୍ଗିଦିଅ ନିଜର ସୁଷୁପ୍ତି,
ସୃଷ୍ଟି କର ନିଜପାଇଁ
ଆଗାମୀର ମୁକ୍ତିକାମୀ ସୁବର୍ଣ୍ଣ ସକାଳ ॥ □□

# ବାଘ

"ବାଘର ଆଁ ଭିତରେ
ପିକ୍‌ନିକ୍" କରିବାର
ସ୍ପର୍ଦ୍ଧା ବା ମୂର୍ଖତା ମୋର ନାହିଁ ;
ନାହିଁ—ସାହସ ବା ଦୁଃସାହସ ;
କାରଣ—ବାଘତ ଆଉ ନିରାମିଷାଶୀ ନୁହେଁ
କିମ୍ବା ଖାଏ ନାହିଁ
ନଈକୂଳର ସବୁଜ ନରମ ଘାସ !!

ମୋ ପାଖରେ
ବାଘର ଏକମାତ୍ର ପରିଚୟ ବାଘ,
ମଣିଷର ତାଜା ରକ୍ତ ଏକମାତ୍ର ଯାହାର ଆହାର
ସେହି କେବଳ ଜାଣେ
ଖେଳାଇ ଖେଳାଇ ମଣିଷ ମାରିବାର
ଅଦ୍ଭୁତ କୌଶଳ ଓ ବାଗ ॥

ବାଘର ଆଁ-ତ ଆଉ
ଦିଗନ୍ତ ପ୍ରସାରି କେଉଁ
ଶ୍ୟାମଳ ପ୍ରାନ୍ତର ନୁହେଁ ;
ନୁହେଁ ପୁଣି ଛାୟା-ସ୍ନିଗ୍ଧ ରମ୍ୟ ସୁଶୀତଳ
କେଉଁ ସ୍ୱଚ୍ଛ ଝରଣା କୂଳର
ଶାନ୍ତ-କାନ୍ତ-ଘନ ବନଭୂମି ;

# ହେ ମହାଜୀବନ ! ୯

କିମ୍ବା ତୁମ୍ଭେଁ ଦ୍ୱାପର ଯୁଗର
ଯମୁନାର କୂଳେ କୂଳେ
କେଳି କଦମ୍ବ ମୂଳର
କେଉଁ ନିଭୃତ କୁଞ୍ଜବନ ;

ତୁମ୍ଭେଁ ଅବା
ଇତିହାସର ଅନ୍ଧାରେ ବିଲୁପ୍ତ
ବ୍ୟାବିଲୋନର ଅତ୍ୟାଶ୍ଚର୍ଯ୍ୟ ଝୁଲନ୍ତ ଉଦ୍ୟାନ ;
ଯେଉଁଠାରେ ଦେଖିପାରେ ଜଣେ
ପିକ୍‌ନିକ୍‌ର ସୁନେଲି ସପନ ॥

ବାଘର ଆଁ ଭିତରେ
ପିକ୍‌ନିକ୍‌ର ଅର୍ଥ ମୁଁ ବୁଝିଛି
ନିଶ୍ଚିତ ମରଣ ପାଖେ
ଅନ୍ଧ ଭଳି ଆତ୍ମସମର୍ପଣ,
ଯେଉଁଠି
କ୍ଳୀବତ୍ୱ ହିଁ ପୌରୁଷର ନାମାନ୍ତର,
ଏବଂ ବୀରତ୍ୱର ଅନ୍ୟ ନାମ ନିର୍ଲଜ୍ଜ ଭୀରୁତା
କିମ୍ବା ବାଧ୍ୟ ଶ୍ୱାନ ଭଳି
ଅବିରତ ତା' ପଦଲେହନ ॥

ଜଙ୍ଗଲର ବାଘ ହେଉ କି
ସିଂହାସନର ବାଘ ହେଉ
ମୋ ଆଖିରେ ଉଭୟେ ସମାନ ;

ଜ୍ୱଳନ୍ତ ଇସ୍ପାତ୍ ଭଳି
ଯାହାଙ୍କର ରକ୍ତବର୍ଣ୍ଣ ଚକ୍ଷୁର ଗୋଲୋକ
ଘୂରିବୁଲେ—ପାହାଡ଼ରୁ ପ୍ରାସାଦ
ଓ ଅରଣ୍ୟରୁ ଲୋକାଳୟ,

ଏବଂ ଯ ହାଙ୍କର ଆଦିମ ହିଂସ୍ରତା
ଓ ଉଦଗ୍ର କାମନାର ଆଁ ଭିତରେ
ନଶ୍ଚିହ୍ନ ହୋଇଯାଏ
ଲକ୍ଷ ଲକ୍ଷ ନଗଣ୍ୟ ଜୀବନ ॥

ବାଘ !
କହ୍ନାରେ ଯାହାର
ଆଦିମ ବନ୍ୟତାର ସ୍ୱାଦ,
ସାରା ଦେହରେ ତାର
କଳା ଧଳା ପଟାପଟା ଦାଗ ।

ସେହି ବାଘର ଆଇଁଷିଆ ଆଁ ଭିତରେ
କେବେ କଣ କଅଁଳିବ
ପ୍ରେମ ଆଉ କରୁଣାର କଅଁଳିଆ ଶାଗ ?

ତେଣୁ—
ବାଘର ଆଁ ଭିତରେ
ପିକ୍‌ନକ୍ କରିବାର
ସ୍ପର୍ଦ୍ଧା ବା ମୂର୍ଖତା ମୋର ନାହିଁ,

ସେଥିପାଇଁ
ବାଘର ବ୍ୟାଘ୍ରତା ବିରୋଧରେ
ହିବାରାତ୍ର ଏଇ ମୋର ଆପ୍ରାଣ ଲଢେଇ
ଚାଲିଛି ;
ଓ ଅର୍ଦ୍ଧବନ ଧରି ଚାଲିଥିବ ;
ମୁଁ ଯେଣୁ ମଣିଷ
ପାରିବ ନାହିଁ କରି ହିଂସ୍ରତାର ଜୟଗାନ
ଅବା— ପାରିବ ନାହିଁ ଗାଇ
ବାଘ ଆଉ ବାଘୁଣୀର ସ୍ତବ ॥ ☐☐

# ବାୟା ଚଢ଼େଇ

ବାୟାର କ ଯାଏ ?
ବାଆ ଦେଲେ ବସା ଦୋହଲୁଥାଏ ॥

ମୁଁ ସେହି ବାୟା ଚଢ଼େଇ
ଯିଏ ଜୀବନର ଲମ୍ବା ତାଳଗଛେ
ଝୁଲୁଛି ନଇଁସେ / ହଲି ହଲି
ସମୟର ପବନରେ ଦୋହଲି ଦୋହଲି ॥

ଉପରେ ଆକାଶ ମୋର
ତଳେ ତ ପୃଥିବୀ,
ମଥାଉପରେ ଜଳେ ମୋର
ଅସଂଖ୍ୟ ତାରକା, ଏବଂ
ଚନ୍ଦ୍ର ଆଉ ରବି ।

ମୁଁ କାହାକୁ କରେନା ଖାତିର୍
କମ୍ବା ବେଖାତିର୍ ;
ସାନ ସାନ ମେଲି ଦୁଇ ଡେଣା,
ଆକାଶରେ ଉଡ଼େ ମୁହିଁ
ଯେମିତକ ଏକାନ୍ତ ଅଜଣା ।

ପହିଁରେ ପବନେ,
ମାଟିରୁ ଖାଏ ମୁଁ ଖାଦ୍ୟ
ସ୍ୱପ୍ନ ଦେଖେ
ନୂଆ ଏକ ସୁନ୍ଦର ଜୀବନେ ॥

# ହେ ମହାଜୀବନ ! ୧୨

ମୁଁ ଏକ ବାୟୁ ଚଢ଼େଇ
ଆପଣାର କରେନା ବଢ଼େଇ,
ହେଲେ ବି ମୁଁ ଶ୍ରେଷ୍ଠ
ମୋତେ ମାରି ପାରେ ନାହିଁ
ତା' ବନ୍ଧୁକ ଶ୍ରେଷ୍ଠ,
କାଳର ଭୁଜଗ,

କଳ୍ପନାର ସୁନେଲି ଡେଣାରେ
ଯେତେବେଳେ ମୁହିଁ ଉଡ଼ିବୁଲେ
ସେତେବେଳେ ମନେହୁଏ
ମୁଁ କି ଏକ ବେଗବାନ୍ ଦୁରନ୍ତ ତୁରଗ ! !

ମୁଁ ମାନେ ନାହିଁ ଝଡ଼,
ମୋତେ ବାନ୍ଧି ପାରେ ନାହିଁ
କେଉଁ ଦୁଷ୍ଟ ସମ୍ରାଟର ଗଡ଼ ।

ମୁଁ ମାନେନା ଅତ୍ୟାଚାରୀ
ରାଜାର ହୁକୁମ୍
କିମ୍ବା ତା'ର ନିରଙ୍କୁଶ ଶାସନର ଡୋରି,
ମୁଁ ନିଜ ଇଚ୍ଛାରେ ଉଡ଼େ
ଆକାଶକୁ ଆଲିଙ୍ଗନ କରି ॥

ମୁଁ ଚାଖିଛି ପ୍ରାନ୍ତରର
ଅରଣ୍ୟର ସ୍ୱାଦ
ମୋ ଆଖିରେ ଝଲ୍‌ମଲ୍
ଦିଗନ୍ତର ନୀଳ ;
ମୋ ଅଣ୍ଟରେ ବିଳମ୍ବିତ
ଶସ୍ୟର ସୁରଭି
ମୋ ଡେଣାରେ ନୃତ୍ୟ କରେ
ଚିରକାଳ ସୁବର୍ଣ୍ଣ ସକାଳ ॥

ମୁଁ ବୁଣି ଚାଲିଛି ମୋର କଳ୍ପନାର ବସା
ମୋ ସୁନ୍ଦର ସୃଷ୍ଟିଟିଏ ପାଇଁ,
ଥର ଥର ପବନରେ ଦୋହଲି ଦୋହଲି
ରହିଛି ମୁଁ ପୃଥିବୀକୁ ଚାହିଁ ॥

ମୋ ସାମ୍ନାରେ ଭାଙ୍ଗିଯାଏ
କେତେ ରାଜଦଣ୍ଡ
ଜଣେ ରାଜା ଗଲେ ପୁଣି
ଆଉଜଣେ ଆସେ,
ବିଚିତ୍ର ଖିଆଲି ବହୁ ସମ୍ରାଟଙ୍କ
ମହଲ ବି ଉଠେ
ତହୁଁ ପୁଣି ଶିଳାଖଣ୍ଡ ଖସେ ।
ପାତ୍ର-ମନ୍ତ୍ରୀ-ପାରିଷଦ ଯାଆନ୍ତି ବଦଳି,
ମୁହିଁ କିନ୍ତୁ ସେହି ଶ୍ରେଷ୍ଠ ବାୟା ଚଢ଼େଇ ଯେ
ଜୀବନର ଲମ୍ବା ତାଳଗଛେ
ଚିରକାଳ ଝୁଲୁଛି ନିର୍ଭୟେ
ଧୀରେ ଧୀରେ
ସମୟର ପବନରେ
ମହାନନ୍ଦେ ଦୋହଲି ଦୋହଲି ॥ □□

# ମଣିଷ

'ମଣିଷ'
ଏହି ଶବ୍ଦଟିର
ପ୍ରତିଟି ଉଚ୍ଚାରଣ ଭିତରେ
ସ୍ପନ୍ଦିତ ହୁଏ
ପ୍ରତିଟି ରକ୍ତବିନ୍ଦୁ ;

ଚହଲି ଉଠେ
ନିସ୍ତରଙ୍ଗ ନୀଳ ସମୁଦ୍ର ;

ଫାଟିପଡ଼େ
ଅନ୍ତହୀନ ଅନ୍ତରୀକ୍ଷ ;

ଧ୍ୱନିତ ହୁଏ
ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ;

ଥରିଉଠେ
ଈଶ୍ୱରର ସିଂହାସନ ;

ଜଳିଯାଏ
ରାବଣର ସ୍ୱର୍ଣ୍ଣଲଙ୍କା ;

ଖସିପଡ଼େ
ଇନ୍ଦ୍ରର ମୁକୁଟ ;

ସ୍ତବ୍ଧ ହୁଏ
ବିଶ୍ୱ ଚରାଚର ;

ଆଉ କମ୍ପିଉଠେ
ସହସ୍ର ଯୋଜନ ବ୍ୟାପୀ
ସପ୍ତସିନ୍ଧୁ ଦଶଟି ଦିଗନ୍ତ ॥

କିନ୍ତୁ 'ମଣିଷ'
ଶକ୍ତିମାନ୍, ମହାପ୍ରାଜ୍ଞ
ହତଭାଗ୍ୟ, ନିର୍ବୋଧ 'ମଣିଷ'
ଭଗବାନ୍ ଭାଲପଟେ
ଆପଣାର ପଦଚିହ୍ନ
ଆଙ୍କିଦେବା ପରେ
ନିଜେହିଁ ନିଜକୁ ଭେଟେ
ସମ୍ମୁଖ ସମରେ ।

ଖସିପଡେ ଶିରସ୍ତ୍ରାଣ
ରକ୍ଷାକାରୀ କବଚ-କୁଣ୍ଡଳ ;
ଆପଣା ମସ୍ତକ ଲୋଟେ
ଆପଣାର ଶାଣିତ ଖଡ୍ଗରେ,
ୱାଶିଂଟନ୍, ମସ୍କୋ ବା ପ୍ୟାରିସ୍
ଦିଲ୍ଲୀ ଅବା ବାଗ୍‌ଦାଦ
ଲଣ୍ଡନ ବା ବେଜିଂର
ରୁଧିରାକ୍ତ ରାଜପଥ ପରେ ॥ □□

# ହାତ

କାହିଁ ସେହି ହାତ ?
ଯେଉଁ ହାତ ଛୁଇଁଦେଲେ
ପୃଥିବୀ ପାଲଟି ଯା'ନ୍ତା ସୁନା,
ଏବଂ ଯାହାର ଅଭୟ ମୁଦ୍ରାରେ
ପୃଥିବୀ ପାଆନ୍ତା ବରାଭୟ ।

ଆଜି କିନ୍ତୁ
ସେ ହାତରେ ଲକ୍ଷ ଲକ୍ଷ କଳଙ୍କର ଦାଗ ॥

କାହିଁ ସେହି ହାତ ?
ଯେଉଁ ହାତ ଛୁଇଁଦେଲେ
ମଣିଷ ପାଲଟି ଯା'ନ୍ତା ଦେବତା,
ଏବଂ
ଯାହାର ମଧୂକ୍ଷରା ଅମୃତ ସ୍ପର୍ଶରେ
ସୃଷ୍ଟି ହୁଅନ୍ତା ମଧୁମୟ ।

ଆଜି କିନ୍ତୁ ସେ ହାତରେ
ଅସଂଖ୍ୟ ତାଜା ରକ୍ତର ଛିଟା ॥

କାହିଁ ସେହି ହାତ ?
ଯେଉଁ ହାତ ଛୁଇଁଦେଲେ
ନିସ୍ତରଙ୍ଗ ବିବର୍ଣ୍ଣ ଜୀବନ
ମଖମଲି ହଳଦିଆବସନ୍ତ ଭଳି
ବେପରୱା ଉଡ଼ି ବୁଲନ୍ତା
ଏବଂ ଯାହାର ଶୀତଳ ସଞ୍ଚାରରେ
ଜୀବନ ହୁଅନ୍ତା ସ୍ୱପ୍ନମୟ ।

ଆଜି କିନ୍ତୁ ସେ ହାତରେ
ଉତ୍କଟ ବାରୁଦର ଗନ୍ଧ ॥

ଏତିକି ବେଳେ
ଠିକ୍ ଏତିକି ବେଳେ
ପ୍ରିୟତମା !
ବଢ଼ାଇଦିଅ ତୁମର ହାତ,
ମଧୁ-ଯାମିନୀର
ପ୍ରଥମ ସ୍ପର୍ଶରେ ଶିହରିତ
ତୁମର ସେହି ଥର ଥର
ଭୀରୁ କଂପିତ ହାତ ।

ସେଥିରେ ଜଘନ୍ୟ ପ୍ରତାରଣା
ଓ ଅବିଶ୍ୱାସର
କଳଂକ ନାହିଁ ତ ??

ବନ୍ଧୁ !
ବଢାଇଦିଅ ତୁମର ହାତ,
ଆଦ୍ୟ ପ୍ରଭାତରେ
ଉଦୟରାଗ ରଞ୍ଜିତ
ତୁମର ସେହି ସ୍ନେହ-ସ୍ନିଗ୍ଧ
ଅନ୍ତରଙ୍ଗ ହାତ ।

ସେଥିରେ
ନିର୍ମମ ପୈଶାଚିକତାରେ ଉନ୍ମତ୍ତ
ନରରକ୍ତର
ଛିଟା ନାହିଁ ତ ??

ହେ ଅବୋଧ-ନିଷ୍ପାପ ଶିଶୁ !
ବଢ଼ାଇଦିଅ ତୁମର ହାତ,
ସ୍ୱପ୍ନିଳ ଭବିଷ୍ୟତ ଆଡ଼କୁ
ଲମ୍ବିଯାଇଥିବା
ତୁମର ସେହି
ବିପୁଳ ସମ୍ଭାବନାର ହାତ ।
ସେଥିରେ
ବିଶ୍ୱ-ବିଧ୍ୱଂସୀ ସମରାଗ୍ନିର
ଉତ୍କଟ ବାରୁଦ ଗନ୍ଧ ନାହିଁ ତ ??

ତୁମର କୁହୁକ-ହାତର
ଯାଦୁକରୀ ସ୍ପର୍ଶରେ
ପାଷାଣୀ ଅହଲ୍ୟା ଭଳି
ଜାଗିଉଠୁ ହତଶ୍ରୀ ପୃଥିବୀ,
ଜୀଇଉଠୁ ମୁମୂର୍ଷୁ ମଣିଷ,
ହସିଉଠୁ ବିଦଗ୍ଧ ଜୀବନ ॥ □□

# ମା' ମୋର !

ମା !
ମା' ମୋର
ଗୋଟିଏ ଡ଼ାକରେ ଖାଲି
ଗୋଟିଏ ଡ଼ାକରେ
କୋମଳ ହୃଦୟ ତୋର ଥରଉଠେ
ଏବଂ ନୀରବରେ
ଝରିପଡ଼େ ଅଶ୍ରୁ,
ଛଳଛଳ ନୟନରୁ
ଢ଼ଳଢଳ ସକରୁଣ ଅଶ୍ରୁ ॥

ମା !
ମା' ମୋର !
ଆଜ କନ୍ତୁ, କୋଟିଏ କଣ୍ଠରେ ଖାଲ
ହାହାକାର,
କୋଟିଏ ହାତରେ ଖାଲ
ହତାଶାର ଭଗ୍ନ ଭକ୍ଷାଥାଳ,
ଲୁହର ସ୍ୟାହ୍ୱରେ ଆଜ ଅଙ୍କାହୁଏ
ସକରୁଣ ମାନଚତ୍ର ତୋର,
ଏବଂ ଲହୁରେ ରଙ୍ଗୀନ ହୁଏ
          ତୋ' ଶୀର୍ଣ୍ଣ ଚରଣ,
ତୋ ହାତର ମଧୁଭାଣ୍ଡ
          ପାଲଟିଛି ନୀଳ ଅହିଫେନ ।

କହ କେଉଁ ଦେବଦୂତ ଆଜ
ସ୍ୱର୍ଗରୁ ଆଶିଷ ଡ଼ାଳ
ମା' ତୋତେ ଦେଇପାରେ ଶାନ୍ତି ! !
ମଧୁସ୍ରବା ହୃଦୟରେ ତୋର
ଝଷର ନର୍ଯ୍ୟାସ ଖାଲି ହୁଏ ଉବୁଟୁବୁ,
ଭ୍ରାନ୍ତି ଖାଲି ଭ୍ରାନ୍ତି !!

ମା,
ମା' ମୋର !
କେବେ କେଉଁ ସୁବର୍ଣ୍ଣ ସକାଳେ
ଭାଙ୍ଗିବ ପାହାଡ଼ ତୋର
ଭାଙ୍ଗିବ ପାହାଡ଼ ?
ଝଲସିବ ଝଲମଲ ରତ୍ନସିଂହାସନ ?
ଶ୍ମଶାନର ଜଳନ୍ତା ଜୁଇରୁ ପୁଣି
ଉକୁଟିବ ଅମଳାନ କୃଷ୍ଣଚୂଡ଼ା-ହସ
ଜନ୍ମନେବ
ମୃତ୍ୟୁହୀନ ଅସଂଖ୍ୟ ଜୀବନ ?? □□

# କ୍ୟାଲେଣ୍ଡରର ଶିଶୁ

ଏତେ ହସ
କେଉଁଠି ଥିଲା କେଜାଣି,
ଝରି ଆସୁଛି ଯେମିତି
ଲାଲ ଟକ୍ ଟକ୍
ଶୀତଳ ସୂର୍ଯ୍ୟର ଝରଣା ।।

ଏତେ ସ୍ୱପ୍ନ
କେଉଁଠି ଥିଲା କେଜାଣି,
ଫୁଟିଯାଉଛି ଯେମିତି
'ମୋଗଲବାଗ'ର
ଲକ୍ଷ ଲକ୍ଷ ରକ୍ତଗୋଲାପ ।।

ଏତେ ଚପଳତା
କେଉଁଠି ଥିଲା କେଜାଣି
ଖେଳି ଯାଉଛି ଯେମିତି
ଧୂଳିଆ ଗାଁ-ଦାଣ୍ଡରେ
ଶ୍ରାବଣୀ ମେଘର ଲହରୀ ।।

ଦ୍ୱିଧା ବିଭକ୍ତ
ଗୋଟିଏ ଲାଲ୍ ଆପେଲ୍ ଭଳି
ତା'ର ଥରଥର ଓଠ ଦୁଇଟିର ହସରେ
ଆହା, କେତେ ସ୍ୱପ୍ନ !
କେତେ ରଙ୍ଗ-ରଙ୍ଗୀନ ସ୍ୱପ୍ନ !!

ଫୁଙ୍ଗୁଲା ପଡ଼ିଆର
ସବୁଜ ଘାସ ଉପରେ
ଡ଼େଇଁ ବୁଲୁଥିବା
କଅଁଳାବାଛୁରୀଟି ଭଳି
ଛନ ଛନ ଦେହରେ ତା'ର
ଆହା, କେତେ ଚପଳତା !
କେତେ ଛନ୍ଦ-ମଧୁର ଚପଳତା !!

ସେ କଣ ହସର ପସରା ଖୋଲି ଦେଇଛି,
ନାଁ, ସ୍ୱପ୍ନର ବଜାର ମେଲି ଦେଇଛି,
ନାଁ, ଚପଳତାର ଫୁଲନ୍ତ ବେଲୁନ୍ଟିଏ
ଉଡ଼ାଇ ଦେଇଛି,
କେଉଁ ରଙ୍ଗୀନ ସୂତାରେ ଗୁଡ଼ାଇ
ନୀଳ ନୀଳ ଆକାଶ ଆଡ଼କୁ !!

ଆଜ ତା' ପାଖରେ ଦରସ୍ତ
'ଅରଣା ମଇଁଷି'ର ଶିଙ୍ଗ ;
ଆଜ ତା' ଆଖିରେ ନଷ୍ଟ୍ରଭ
ବାଦାମି ସୂର୍ଯ୍ୟାସ୍ତର ରଙ୍ଗ ।।

## ହେ ମହାଜୀବନ ! ୨୩

ପାଉଁଶିଆ ପୃଥିବୀର
ଆଇଁଷିଆ ଆଖିରେ
ସେ ଯେମିତି
ଏକ ସତେଜ ସକାଳର ସୁର୍ମା,
ଏକ ସ୍ୱପ୍ନମୟ କଅଁଳ ପ୍ରଲେପ ।

ଅଗ୍ନିସ୍ନାତ ଆକାଶରେ
ସେ ଯେମିତି
ଏକ ବିଲମ୍ବିତ ସା'ନାଇର ସୁର,
ଏବଂ ରଣକ୍ଲାନ୍ତ ଧରଣୀର
ବିଧ୍ୱସ୍ତ ମାଟିରେ
ସେ ଯେମିତି
ଏକ ମଧୁଚ୍ଛନ୍ଦ ଧ୍ରୁପଦୀ ଆଳାପ ।। □□

# ଯେଉଁଠି ଛୁଇଁଲେ ହାତ

ଆଜି :
ଯେଉଁଠି ଛୁଇଁଲେ ହାତ
ଅସମ୍ଭବ କ୍ଷତ,
ଲୋହିତ ରକ୍ତର ସ୍ରୋତ
ଝରି ଝରି ଅବିରତ
ସୃଷ୍ଟି କରେ ରକ୍ତର ପ୍ରପାତ ।।

ଆଜି :
ଯେଉଁଠି ଡେରିଲେ କାନ
ଘନଘନ
ରକ୍ତମୁଖା ବହ୍ନିମାନ୍ ବନ୍ଧୁକ ଗର୍ଜନ
ଆତଙ୍କର କୁହେଳିରେ ଗ୍ରାଇଦିଏ ମନ,
ଏବଂ ଜଳିଯାଏ
ସୂର୍ଯ୍ୟସ୍ନାତ ଜୀବନର ଶୁଭ୍ର ପଦ୍ମବନ ।।

ଆଜି :
ଯେଉଁଦିଗେ ବୁଲାଇଲେ ଆଖି
ପକ୍ଷ ଟେକି
ଅଶୁଭ ଶକୁନ ପକ୍ଷୀ
ମଣିଷ ମାଂସର ପାଇଁ ରହିଅଛି ଡାକି,
ମନେହୁଏ ଯେଜି
ଜୀବନ୍ତ ମୃତ୍ୟୁର ଦୂତ
ସୁତୀକ୍ଷ୍ଣ ଚଞ୍ଚୁରେ ତାର
ମରଣର ପାଣ୍ଡୁଲିପି ଯାଏ ଲେଖିଲେଖି ।।

ଏତେବେଳେ କ୍ରୁଦ୍ଧ ବନ୍ଧୁ
କ୍ରୁଦ୍ଧ ତୁମେ ଆଜି,
ଅନାବିଲ ହୃଦୟର ସୁବର୍ଣ୍ଣ ସକାଳ
କେଉଁଠାରେ ଯାଇଅଛି ହଜି ?
ଝୁରିବ ଯାଇଛି ପୁଣି କେଉଁଠାରେ କହ
ମାନବିକ ଚେତନାର ସ୍ୱର୍ଣ୍ଣ-ଶସ୍ୟରାଜି ??

ଆକାଶ ଛୁଇଁଛି ଶିର
ମଣିଷର,
ପାଦ କିନ୍ତୁ ଛୁଇଁଛି ପାତାଳ
ଆଖିର ଦିଗନ୍ତ ଛରେ
ଧୀରେ ଧୀରେ ନଇଁଛି ଅକାଳ ।
ବୁଦ୍ଧିର ବିଦ୍ୟୁତରେଖା
ଝଲସାଇ ଅନ୍ତରୀକ୍ଷ,
ବିପୁଳା ପୃଥ୍ୱୀର—
ବକ୍ଷପରେ ଆଙ୍କିଦିଏ
ବିଜ୍ଞାନର ଜ୍ୱଳନ୍ତ ସ୍ୱାକ୍ଷର ॥

ଏତେବେଳେ କିନ୍ତୁ ହାୟ
ଅସହାୟ—
ମଣିଷର ଆତ୍ମାପକ୍ଷୀ ଝୁରେ,
ବିକଳରେ
ସଭ୍ୟତାର ଅଭ୍ରଭେଦୀ
ବହ୍ନିମାନ୍ ଆଗ୍ନେୟ ଶିଖରେ ।
'ନାଗାସାକି' 'ହିରୋସିମା' ବିଦଗ୍ଧ ଜଟରେ
ଆଜିବି ବାହୁନି ମରେ
ହତଭାଗ୍ୟ ବିଜ୍ଞାନର
ବିବେକର ନିସ୍ୱହା କପୋତ
କରୁଣାର୍ଦ୍ର ସ୍ୱରେ ॥

ଆଦର୍ଶର ଦ୍ୱାହି ଦେଇ
ଦ୍ୱାହି ଦେଇ ମାଟି ଓ ଧର୍ମର
ଆଜବି ହେଉଛି ଭଙ୍ଗା
ନଭସ୍ପର୍ଶୀ ଉତ୍ତୁଙ୍ଗ ମୀନାର,
ମାନବିକତାର ।

'ଇଗନ'ର ରକ୍ତପଙ୍କେ
କୋରାନ୍‌ର ସ୍ରଷ୍ଟା ଯେବେ ଜନ୍ମେ,
ୟାଙ୍କି ପନ୍ଥ ରଣର ହୁଙ୍କାରେ
ତାରକା ଯୁଦ୍ଧର ପାଇଁ
ଅହୋରାତ୍ର ଆୟୋଜନ ଚାଲେ ॥

କ୍ଷୁଧିତ ସିଂହର ଆତ୍ମା ଗର୍ଜିଉଠେ
ରେବା ଆଉ ଟେଡ୍ରୁର ଘରେ,
ସିଂହଳର ସିଙ୍କୋନା ଓ ରବର ବଣରେ
ମଣିଷ କରେଛି ଗଢ଼େ,
ଆଫ୍ରିକାର ଅନ୍ଧକାରେ
ମୁକ୍ତିକାମୀ 'ବେଞ୍ଜାମିନ୍'
ମୃତଦେହ ସଢ଼େ ;

ଦେଶେ ଆଉ ଦେଶାନ୍ତରେ
ଝିଲେ-ବଣେ, ପଥେ ଓ ପ୍ରାନ୍ତରେ
ବିଷବାଷ୍ପ ବିସ୍ଫୋରଣେ
କମାଣର ଗୁଳି ଆଉ
ବନ୍ଧୁକର ସଙ୍ଗୀନ୍‌ର ମୁନରେ
ମଣିଷର ବକ୍ଷସ୍ଥଳେ
ସଭ୍ୟତାର ଶବଯାତ୍ରା ଚାଲେ ॥

ମୁଁ କିନ୍ତୁ ପାରିବି ନାହିଁ
ଆପଣାର ସ୍କନ୍ଧେ ମୋର ବନ୍ଧୁ
ସହସ୍ର ଶତାବ୍ଦୀ-ପ୍ରାପ୍ତ
ମାନବିକ ଚେତନାର ଶବ,
ବନ୍ଧୁ ମୁଁ ପାରିବି ନାହିଁ
କ୍ଷମତାର ପଙ୍କଶାଳେ ଆଜି
ରକ୍ତର ଆହୁତି ଦେଇ
ଗାଇବାକୁ ସର୍ବଗ୍ରାସୀ
ରାକ୍ଷସୀର ସ୍ତବ ॥

ବନ୍ଧୁ ତେଣୁ
ବନ୍ଧୁକ ନଳୀକୁ ଆଜି
ଅବନତ କରି
ପରିଣତ କର ତାକୁ
ମୋହନ ବଂଶୀରେ,
ଏବଂ ତାର ମଧୁସ୍ୱରେ
ତୋଳିବାକୁ ଦିଅ ମୋତେ
ସ୍ନେହସିକ୍ତ ସଙ୍ଗୀତର
ଲଳିତ ମୂର୍ଚ୍ଛନା ;
ଆଣବିକ ରଶ୍ମି ଯେତେ
ଲକ୍ଷଲକ୍ଷ ନିଷ୍ପାପ ଶିଶୁର
ପୁଷ୍ପିତ ହସର ତଳେ
ଝରିବେ ପାଲଟି ଯାଉ
ଦିଗ୍‌ବିଦିଗେ ବିଚ୍ଛୁରିତ
ଶଙ୍ଖଶୁଭ୍ର ଫେନିଳ ଜୋଛନା ।

ରକ୍ତର କାଳିରେ ହେଉ
ଜୀବନର ମହାକାବ୍ୟ ଲେଖା ;
ଅସ୍ତ୍ର ସବୁ ତୂଳୀ ହୋଇ
ଆଙ୍କିଯାଉ ହୃଦୟର
ଧ୍ୱସ୍ତ ଚସପଟ,
ଧ୍ୱଂସର ଶିଖରେ ଉଡ଼ୁ
ମାନବିକ ଚେତନାର
ଦିଗ୍‌ବିଜୟୀ ସୃଷ୍ଟିର ପତାକା ॥ □□

# ଭିଡ

ଭିଡରେ ହଜିଯିବା ସହଜ
ଖୁବ୍ ସହଜ,
ଏବଂ ହଜିଯିବା ଭୟରେ
ଗାଉଁଲି ସ୍ତ୍ରୀଲୋକଙ୍କ ଭଳି
କାନକୁ କାନ ଧରି ଚାଲିବାରେ
ନା ଅଛି ପୌରୁଷ,
ନା ଅଛି ଗୌରବ !!

ଭିଡର ଅସଂଖ୍ୟ ମୁହଁ ଭିତରେ
ତୁମ ମୁହଁ,
ଅଜସ୍ର ଆଖି ଭିତରେ
ତୁମ ଆଖି,
ଅସଂଖ୍ୟ ଚାଲି ଭିତରେ
ତୁମ ଚାଲି,
ଆଉ ସହସ୍ର ସ୍ୱର ଭିତରେ
ତୁମ ସ୍ୱର,
ଜଣା ପଡ଼ିବନି ଜମା
ଧରା ପଡ଼ିବନି,
ଯେହେତୁ ଭିଡ଼ ଭିତରେ
ସବୁ ମୁହଁ ଏକାଭଳି
ସବୁ ଆଖି ଏକାଭଳି
ସବୁ ଚାଲି ଏକାଭଳି
ଆଉ ସବୁ ସ୍ୱର ଏକାଭଳି ;
କାରଣ
ଭିଡ଼ର ଗୋଟିଏ ରୂପ
ଛନ୍ଦ ବି ଗୋଟିଏ ॥

ତେଣୁ ଭିଡ଼ ଭିତରେ ହଜିଯିବା ସହଜ
ଖୁବ୍ ସହଜ ହେଲେ ବି
ଆପଣା ଗ୍ରୁଏଁ କିନ୍ତୁ ନିଜକୁ ହଜେଇ ଦେବା
ଏତେ ସହଜ କଥା ନୁହେଁ ;
ଆହୁରି ସହଜ ନୁହେଁ
ନିଜକୁ ହଜାଇ ଦେଇ
ପୁଣି ଫେରିପାଇବା,
ଏବଂ ନିଜକୁ ହଜାଇ ଦେଇ
ପୁଣି ଖୋଜି ପାଇବା ॥

ଥରେ, ଭିଡ଼ର ଘୋ-ଘୋ ସମୁଦ୍ର ଭିତରେ
ନିପୁଣ ବୁଡ଼ାଳି ଭଳି ବୁଡ଼ିଯାଇ
ପୁଣି ଉପରକୁ ଉଠି ଆସିଲା ପରେ
ଦେଖିନିଅ
କେତେ ମୁକ୍ତା ପାଇଅଛ ଖୋଜି,
କେତେ ରତ୍ନ କରିଚ ସନ୍ଧାନ ।
ଏବଂ ସେତେବେଳେ ଚେଷ୍ଟାକର
ନିଜର ମୁହଁରେ
ଅସଂଖ୍ୟ ମୁହଁର ଗ୍ରୁପ ରଖିବାକୁ,
ନିଜର ଆଖିରେ
ଅଜସ୍ର ଆଖିରେ ଛବି ଦେଖିବାକୁ,
ନିଜ ଗୃଲରେ
ଅସଂଖ୍ୟ ଗୃଲର ଛନ୍ଦ ତୋଳିବାକୁ,
ଏବଂ ନିଜ ସ୍ୱର-ଲହରୀରେ
ସହସ୍ର କଣ୍ଠର ସ୍ୱର ଧରିରଖିବାକୁ ॥ ☐☐

# ଅକାଳ ସକାଳ

ରେଡ଼ିଓରୁ ହଠାତ୍ ଭାସି ଆସିଲା
ସାହାନାଇରେ
ପ୍ରଭାତି ମାଙ୍ଗଳିକର ମଧୁର ମୂର୍ଚ୍ଛନା,
ଏବଂ ସକାଳର ଶୁଭେଚ୍ଛା ଜଣାଇ
ଘୋଷକର କଣ୍ଠରୁ ସୂଚୀତ ହେଲା
ନୂତନ ଦିବସର କାର୍ଯ୍ୟକ୍ରମ ।

ଅଥଚ
ସହସ୍ରାଂଶୁ ସୂର୍ଯ୍ୟଦେବ
ଗଲେ କୁଆଡ଼େ ?
ତାଙ୍କର ଦର୍ଶନ ନାହିଁ କାହିଁକି ?
ଆସୁ ଆସୁ ବାଟରେ କେଉଁଠି
ଅଟକି ଗଲେନା କଣ ?
ନା କେଉଁ ଦୂର ଦିଗନ୍ତର
ଅଫନ୍ତସ ବାଲିବନ୍ତରେ
ଅତର୍କିତେ ଲିଖିଗଲା
ତାଙ୍କ ସପ୍ତାଶ୍ୱ-ଶୃଙ୍ଖଳିତ ରଥ ? ?

ପକ୍ଷୀମାନେ କି କାହାନ୍ତି ?
ନୂତନ ସକାଳକୁ
ସ୍ୱାଗତ ଜଣାଇ
କାହିଁ
କେଉଁଠି ହେଲେତ ଶୁଭୁନାହିଁ
ସେମାନଙ୍କ ମଧୁବୋଲା ଲଳିତ କାକଳୀ ?
କମ୍ବା ପ୍ରଭାତ ଆକାଶର
ନୀଳ ରାଜପଥେ
ଡେଣା ଝାଡ଼ ଝାଡ଼
ସେମାନଙ୍କ ଉଡ଼ିଯିବାର ଧୀର ଲଘୁ ଶବ୍ଦ ??

ଆଖି ମଳି ମଳି ଝରକା ଖୋଲିଲି,
ଏବଂ ବାହାରକୁ ଅନାଇଲି,
କିନ୍ତୁ ଇଏ କଣ ! !

ଅନ୍ଧକାର, ଗାଢ଼ ଅନ୍ଧକାର
ନିଶା ଗର୍ଜୁଛି ସାଇଁ ସାଇଁ
କେଉଁଠାରେ କେହିନାହିଁ
ବୋଧହୁଏ ଅର୍ଦ୍ଧରାତ୍ରି,
ଅଥଚ ସକାଳ ହେଲା କେତେବେଳେ ?
କିନ୍ତୁ
ରେଡ଼ିଓରୁ ଯେ ଭାସି ଆସୁଛି
ପ୍ରଭାତ ମାଙ୍ଗଳିକର ମଧୁର ମୂର୍ଚ୍ଛନା !
ଏବଂ
ଘୋଷକର କଣ୍ଠରୁ ସୂଚୀତ ହେଉଛି
ନୂତନ ଦିବସର କାର୍ଯ୍ୟକ୍ରମ ! !

ତା'ହେଲେ
ମୁଁ କଣ ଅନ୍ଧ ନା ବଧିର !
ନା, ମୋ ଆଖିର ପରଦାରେ
ମାଳ ମାଳ ମିଥ୍ୟାର ପରଳ !!
କିଛି ବୁଝିପାରିଲିନି
ବିଶ୍ୱାସ ବି କରିପାରିଲିନି
ଆପଣାକୁ ଆପେ ।।

ସାହାନାଇରେ
ପ୍ରଭାତି ମାଙ୍ଗଳିକର
ମଧୁର ମୂର୍ଚ୍ଛନା ଝଙ୍କୃଯିବା ପରେ
ଭସି ଆସିଲା—ଦେଶବନ୍ଦନାର ଗୀତ ;

ଅଥଚ ମୋର ଦେଶବାସୀତ
ବର୍ତ୍ତମାନ ନିଘୋଡ଼ ନିଦରେ ସୁପ୍ତ,
ତା'ହେଲେ
ଏ ସଂଗୀତ କାହାପାଇଁ ?
କାହାପାଇଁ ଏ ମଧୁର ସଙ୍ଗୀତର
ଲଳିତ ମୂର୍ଚ୍ଛନା ??

ଠିକ୍ ବୁଝିପାରିଲି ନାହିଁ,
ଭାବିନେଲି ହୁଏତ
ଘଟିଛି ମୋର ମତିଭ୍ରମ ।
ନିଜକୁ ନିଜେ ପ୍ରଶ୍ନକଲି
ମୁଁ ସୁପ୍ତ ନା ଜାଗ୍ରତ ?
ସ୍ୱପ୍ନରେ ନା ବାସ୍ତବରେ ?
ନା, କେଉଁ ଏକ ମାୟାବିନୀର
ଐନ୍ଦ୍ରଜାଲିକ ଚକ୍ରବ୍ୟୂହରେ ବନ୍ଦୀ
ଅସହାୟ ଅଭିମନ୍ୟୁ ??

ଠିକ୍ ଏତିକବେଳେ
ସେହି ଅନ୍ଧକାର ଭିତରୁ ଲମ୍ବି ଆସୁଥିବା
ଗୋଟିଏ କଠୋର କର୍କଶ ହାତ
ତାର ତର୍ଜନୀ ନିର୍ଦ୍ଦେଶ କରି
ମୋତେ ଯେମିତି କହିବାକୁ ଲାଗିଲା—
ଏଠି ସବୁ ସମ୍ଭବ,
ସୂର୍ଯ୍ୟୋଦୟ ହେଉ ବା ନହେଉ,
ପକ୍ଷୀଙ୍କର ଲଳିତ କାକଳୀ
ଶୁଭୁ ବା ନଶୁଭୁ,
କିନ୍ତୁ ସକାଳ ହେବାକୁ ବାଧ୍ୟ ।
ଯେହେତୁ
ରେଡ଼ିଓରୁ ଝରି ଆସୁଛି
ସକାଳର ଶୁଭ ମାଙ୍ଗଳିକ
ଏବଂ ଘୋଷକର କଣ୍ଠରୁ ସୂଚିତ ହେଉଛି
ନୂତନ ଦିବସର 'କାର୍ଯ୍ୟକ୍ରମ ॥ □□

# ସହର ଛକର କୃଷ୍ଣଚୂଡ଼ା

କେଉଁ ଏକ ସହର ଛକରେ
ଦୁଇଦିଗୁ ଆସୁଥିବା
ଦୁଇଜଣ କୃଷ୍ଣକାୟ ଭଦ୍ରଲୋକ ଭଳି
ଦୁଇଗୋଟି ପିଚୁରାସ୍ତା
ପରସ୍ପରେ ଆଲିଙ୍ଗନ କରି
ଯେଉଁଠାରୁ ଯାଇଛନ୍ତି ଆଗକୁ ଆଗେଇ
ଛୁଇଁବାକୁ ମାଇଲ ମାଇଲ ଦୂର ଚକ୍ରବାଳ;

ସେହିଠାରେ
ଠିକ୍ ସେହିଠାରେ
କୃଷ୍ଣଚୂଡ଼ା ଗଛଟିଏ ନୀରବେ ନିଶ୍ଚଳେ
କାହିଁ କେତେ କାଳୁଁ
ହୋଇ ଊର୍ଦ୍ଧ୍ୱଶିର,

ଶାଖା ଓ ପ୍ରଶାଖା ମେଲି
ହୋଇଅଛି ଛିଡ଼ା
ସହି ସହି ଖରା-ବର୍ଷା,
ଶୀତ ଓ କାକର ॥

ସେଦିନ ଜ୍ୟେଷ୍ଠର କେଉଁ
ଧୂ-ଧୂ ଦିନ ଦ୍ୱିପ୍ରହରେ
ଆକାଶରୁ ସେତେବେଳେ
ବର୍ଷୁଥିଲା କୋଟି କୋଟି
ନିଆଁର ସ୍ଫୁଲିଙ୍ଗ,
ସେତେବେଳେ,
ଠିକ୍ ସେତେବେଳେ
ସମଗ୍ର ଗଛଟି କିନ୍ତୁ
ଲାଲେଲାଲ୍ ହୋଇଥିଲା
ଲକ୍ଷ ଲକ୍ଷ ବର୍ତ୍ତିମାନ୍
ଫୁଟନ୍ତ ଫୁଲରେ ।।

ଉହୁଉହୁ ତାତିଲା ଝାଞ୍ଜରେ
ଠହଠହ କୃଷ୍ଣଚୂଡ଼ା
ଜଳଜଳ ହସିପାରେ
ଏତେ ନିର୍ବିକାରେ
ସେଦିନ ଦେଖିଲି ମୁହିଁ
ଅବାକ୍ ନୟନ ମେଲି
ବିମୁଗ୍ଧ ବିସ୍ମୟେ ।।

ମୋର ମନେହେଲା
ଅଜସ୍ର ରଙ୍ଗୀନ ଫୁଲେ
ନଇଁ ପଡ଼ୁଥିବା
ସହର ଛକର ସେହି
କୃଷ୍ଣଚୂଡ଼ା ଗଛଟି ଯେମିତି
ରଙ୍ଗହୀନ ନଗରର
ନିଷ୍ପ୍ରଭ ନିରକ୍ତ ଶତ
ନିପୀଡ଼ିତ ମଣିଷଙ୍କ ପାଇଁ
ସତେ ବା ବିଶଦ ଏକ
ସତର୍କ ସାଇନ୍‌ବୋର୍ଡ଼ ;

ଯେଉଁଥିରେ
ଅଦ୍ଭୁତ ବିଶ୍ୱାସ ଆଉ
ଆତ୍ମପ୍ରତ୍ୟୟର
ଲାଲ୍ ଲାଲ୍ ଜ୍ୱଳନ୍ତ ଅକ୍ଷରେ
ହୋଇଥିଲା ଲେଖା—
"ବଞ୍ଚିବାକୁ ଚାହଁ ଯଦି
ବଞ୍ଚ ମୋ' ଭଳି
ନିଜସ୍ୱ ଦୁଃଖକୁ ଜାଳି
ଜୀବନର ପ୍ରଚଣ୍ଡ ଉଦ୍ଭାସେ;

ହସିବାକୁ ଚାହଁ ଯଦି
ହସ ମୋ' ଭଳି
ପ୍ରାଣଖୋଲା ଅସରନ୍ତି ହସ
ଫୁଟାଇ ସ୍ୱପ୍ନର ଫୁଲ
ବହ୍ନିମାନ୍ ଦୁରନ୍ତ ଉଲ୍ଲାସେ ।।" □□

# ଯଦି ବଞ୍ଚିବାକୁ ଚାହଁ

ବନ୍ଧୁ
ଯଦି ବଞ୍ଚିବାକୁ ଚାହଁ
ନିଜର ଇସ୍‌ପାତ୍-କଠିନ ହାଡ଼ରେ
ତିଆରି କର ବଜ୍ର
ଅମୋଘ-ଅବ୍ୟର୍ଥ ବଜ୍ର ॥

ବନ୍ଧୁ
ଯଦି ବଞ୍ଚିବାକୁ ଚାହଁ
ନିଜର ଉଷ୍ଣ-ଲୋହିତ ରକ୍ତରେ
ଖେଳାଇ ଦିଅ ବନ୍ୟା
କୂଳ-ପ୍ଲାବନୀ ବନ୍ୟା ॥

ବନ୍ଧୁ
ଯଦି ବଞ୍ଚିବାକୁ ଚାହଁ
ନିଜର ଖରତପ୍ତ ନିଃଶ୍ୱାସରେ
ସୃଷ୍ଟି କର ଝନ୍‌ଜା
ପ୍ରଳୟ-ପାଗଳ ଝନ୍‌ଜା ॥

ଯଦ୍ଦ ବଞ୍ଚିବାକୁ ଚାହଁ,
ଶିମୁଳୀ ଭୁଲା ଭଳି
ବାଲୁକା ମୃତ୍ୟୁ ନୁହେଁ,
କପୋତ-ଡେଣା ଭଳି
କୋମଳ ମୃତ୍ୟୁ ନୁହେଁ,
କମ୍ବା, ତୁଷାର କଣିକା ଭଳି
ଶୀତଳ ମୃତ୍ୟୁ ନୁହେଁ,

ହୀରା ଭଳି ଶକ୍ତ
ରେଡ଼ୱୁଡ୍ ଭଳି କଠିନ
ଇସ୍ପାତ ଭଳି ଦୃଢ
ଏବଂ ହିମାଳୟ ଭଳି ମହାନ୍
ମୃତ୍ୟୁ ବରଣ କର ।

ବନ୍ଧୁ
ଯଦ୍ଦ ବଞ୍ଚିବାକୁ ଚାହଁ
ଯଦ୍ଦ ବଞ୍ଚିବାକୁ ଚାହଁ ॥ □□

## ଭିନ୍ନ ସମୟ : ଭିନ୍ନ ଦୃଷ୍ଟି

ସେମାନେ କେବେହେଲେ
ଆକାଶକୁ ଦେଖି ନ ଥିଲେ ;
ସେମାନଙ୍କ ଆଖି ଥିଲା
ନୁଖୁରା ଭୂଇଁରେ ନିବଦ୍ଧ ॥

ସକାଳରୁ ସଞ୍ଜ
ଆଉ ସଞ୍ଜରୁ ସକାଳ
ମାଟିର ଗନ୍ଧରେ କେବଳ
ମତୁଆଲି ହୋଇ
ଚରିବୁଲୁଥିଲେ
ଆଉ ଘୂରି ବୁଲୁଥିଲେ
ସେହି ଧୂଳି-ମାଟି
ଆଉ ପାଣି-କାଦୁଅର
ନିରମାଖି ମଣିଷ ଗୁଡ଼ାକ ॥

ହଠାତ୍ କିନ୍ତୁ
ସେମାନଙ୍କ ମୁହଁ
ଆକାଶ ଆଡ଼କୁ ବୁଲିଗଲା ।
କରୁଣାର କୈବଲ୍ୟ ଆଶାରେ
ସତୃଷ୍ଣ ଓ କରୁଣ ଆଖିରେ
ସେମାନେ ଅନାଇ ରହିଲେ
ଶୂନ୍ୟ ଆକାଶକୁ ॥

ଆଜି ଯେଉଁ
ଉପରମୁହାଁ ମଣିଷ ଗୁଡ଼ାକ
କେବେହେଲେ ଦେଖୁ ନଥିଲେ
ଧୂଳି-ମାଟିର ଅନ୍ତରର ସୁଷମାକୁ,
କେବଳ ଚିରକାଳ
ଆକାଶ ଆଡ଼କୁ ଅନାଇ ଅନାଇ
ହାଓ୍ୱାଇ ସ୍ୱପ୍ନରେ ଥିଲେ ମସ୍‌ଗୁଲ୍,
ସେମାନେ ହଠାତ୍
ପାଦତଳର ମାଟିକୁ
ମୁହଁ ଫେରାଇଲେ ।।

ବନ୍ୟାର କାଉଁରୀ କାଠି
ହଠାତ୍ ସବୁ ଯେମିତି
ଓଲଟ ପାଲଟ କରିଦେଲା ।
ମାଟି ଅନାଇଲା ଆକାଶକୁ
ଆଜି ଆକାଶର ଆଖି
ନଇଁ ଆସିଲା ତଳକୁ,
ଆଦରର ତଳକୁ ।। □□

# ଗୋଟିଏ ବନ୍ୟାର ଦୃଶ୍ୟ

ଚଳ ଚଳ ରକ୍ତଲୋଭୀ ଚିତାବାଘ ଭଳି
କୁଦି କୁଦି, ଲମ୍ଫ ଦେଇ
ଭୟଙ୍କର ଶବ୍ଦ କରି
ଛୁଟି ଆସିଲା ପାଣି,
ଆଉ ତାର ଚକ୍ ଚକ୍ ଧାରୁଆ ଦାନ୍ତରେ
ଏବଂ ମୁନିଆଁ ନଖରେ
ଟିକି ଟିକି କରି ଫିଙ୍ଗିଦେଲା
ଲକ୍ଷ ଲକ୍ଷ ନିରୀହ ଶିକାରକୁ ॥

କଳା କଳା କାଳ-ନାଗୁଣୀ ଭଳି
ନାଚି ନାଚି, ଉଦ୍ୟତ ଫଣା ଟେକି
ଲକ୍ଷ ଲକ୍ଷ ଫେନଚୂଡ଼ ତରଙ୍ଗର
ମିଳି ମିଳି ଉନ୍ମତ୍ତ ଭୁଜଙ୍ଗ
ମାରିଚାଲିଲେ ଚୋଟ,
ଜହରର ଜହ ଜହ ବିଷାକ୍ତ ଚୋଟ,
ଏବଂ ସେହି ବିଷର ଜ୍ୱାଳାରେ
ଯେପରିକି ନୀଳବର୍ଣ୍ଣ ହୋଇଗଲା
ଶତ ଶତ ଗାଁ-ଗଣ୍ଡା, ସହର-ବଜାର,
ବିଲ-ବନ-ଜଙ୍ଗଲ ଓ
ଦଗଦଗା ସବୁଜ ପ୍ରାନ୍ତର ॥

ସବାଖାଇ ବନ୍ୟାର ଡ଼ାଆଣୀ
ତାର ସେହି ଅଲକ୍ଷଣା ଅଶୁଭ ହାତରେ
କଲାକନା ବୁଲାଇଲା ପରେ
ଛଳ ଛଳ ଆକୁଳ ଆଖିରେ
ଆକାଶର ଶୂନ୍ୟତାକୁ ଅନାଇ ଅନାଇ
ପଡ଼ିରହିଲେ—କିଏ ବା କେଉଁଠି
ସେ ନିଶ୍ଚିହ୍ନ ଅସହାୟ
ଅର୍ଦ୍ଧଭୁକ୍ତ ମଣିଷଗୁଡ଼ିକ,
କିନ୍ତୁ ଠିକ୍ ସେତେବେଳେ
ମହାନୁଭବତାର ମୂର୍ତ୍ତିମନ୍ତ ମହାପୁରୁଷମାନଙ୍କର
ଲାଗିଗଲା
ସହାନୁଭୂତି ଓ ସହୃଦୟତାର
ଅଦ୍ଭୁତ ଘୋଡ଼ାଦୌଡ଼ ।

ସ୍ୱାର୍ଥର ପଶାଖେଳରେ
ବାଜିମାତ୍ କରିସାରିବା ପରେ
ସେମାନେ ଖୋଲିଦେଲେ
ସେମାନଙ୍କ କରୁଣାର ଅକ୍ଷୟ ଭଣ୍ଡାର
ଆଉ ଏକାନ୍ତ ଦରଦୀ ହୃଦୟର
ଘୁମନ୍ତ ଓ ନିବୁଜ ଦରଜା ॥

ମଣିଷ ମାଂସର ବେପାର ପାଇଁ
ଅହରହ ଛୁରୀ ପଜାଉଥିବା
ଦସ୍ୟୁାର୍ଦ୍ର କଂସେଇମାନେ
ଦେଖିଲେ
ମାନବିକତାର ମାରାଥନ୍‌ରେ
ବିଜୟ ହାସଲ ପାଇଁ
ଇଏତ ସୁବର୍ଣ୍ଣ ସୁଯୋଗ ॥

ଶତ ଶତ କୁହୁଳିଆ ବକ୍ତୃତାର
ଧୂଆଁଳିଆ କୁହୁଡି ଭିତରେ
କ୍ରମଶଃ ଅସ୍ପଷ୍ଟ ହୋଇଗଲେ
ବାସ୍ତୁହରା, ବସ୍ତ୍ରହରା ଓ ବନ୍ଧୁହରା
ଦୟନୀୟ ମଣିଷଗୁଡ଼ିକ ॥

ବ୍ୟାଙ୍କର ଲକର ଭିତରେ
ସୁରକ୍ଷିତ ହୃଦୟର ଦରଦୀ ମାଲିକମାନେ
ପୁଣ୍ୟର ବିନିମୟରେ ବୁଣିଦେଲେ
ରାଶି ରାଶି ଦୟାର ନିର୍ମାଲ୍ୟ ।

ଆଜି ଆକାଶମାର୍ଗରୁ ଅଭୟ ମୁଦ୍ରାରେ
ଶାସନର ଦେବଦୂତମାନେ ବୃଷ୍ଟି କଲେ
କରୁଣାର କୋଟି କୋଟି କରୁଣ କୈବଲ୍ୟ ! !

ଡଙ୍ଗା ଘାଇ ତଳର
ଆଇଁଷିଆ ଗନ୍ଧଭରା ଚକଟା କାଦୁଅରେ
ଜିଆ ଭଳି ଲେଉଟୁଥିବା
ଅସହାୟା ମାତାର ଅଭୁକ୍ତ ଶିଶୁ,

ସବାଖାଣ୍ଡି ନଈର
ଗୋଳିଆ ପାଣିଧାର ଭିତରେ
ମରିହଜି ଯାଇଥିବା
ଅଳିଅଳ ଶିଶୁର କାକୁସ୍ଥ ଜନନୀ,

ଆକୁଳ ଆଗ୍ରହରେ
ବିଦେଶୀ ସ୍ୱାମୀକୁ ଅପେକ୍ଷା କରୁ କରୁ
ଛଳଛଳ ନଈ ଜଳରେ
ଢଳଢଳ ଆଖିର ଲୁହକୁ ଢାଳୁଥିବା
ହତଭାଗିନୀ ବଧୂ,

ବଢ଼ିରେ ଉବୁଟୁବୁ
ଦୂର ଗାଁ-ମାଟି ଆଡ଼କୁ
ଅପଲକ ଆଖିରେ ଅନାଇ ଅନାଇ
ବନ୍ଧକଡ଼ର ଅପନ୍ତରା କାଦୁଆ ଭୂଇଁରେ ବସିଥିବା
ହତଭମ୍ବ ଗୃହସ୍ଥ,

କିମ୍ବା
ଦଗଦଗା ଧୂସର ବାଲୁଚର ଭିତରେ
ନିଶ୍ଚିହ୍ନ ହୋଇଥିବା ସବୁଜ ଧାନବିଲର
ହତାଶିଆ କୃଷୀ,

ସମସ୍ତଙ୍କ ଆଖିରେ ଯେମିତି
ଲବଣାକ୍ତ ଲୁହ ଶୁଖି ଶୁଖି
କ୍ରମଶଃ ପାଲଟି ଯାଇଛି
ଉଜ୍ଜ୍ୱଳ ସ୍ଫଟିକ,

ଆଉ ସେହି ଆକୁଳ ଅଶ୍ରୁର
ଜମାଟବନ୍ଧା ସ୍ଫଟିକ ଭିତରେ
ପ୍ରତିବିମ୍ବିତ ହେଉଥିବା
ସର୍ବନାଶୀ ବନ୍ୟାର ଦୃଶ୍ୟ
ଆହା କି କରୁଣ !
କି ବୀଭତ୍ସ !!
କି ଭୟଙ୍କର !!! □□

# ତୁମେକି ଦେଖିଚ ତାଙ୍କୁ ?

ଗୃଳଣୀ ଚଷମା ପିନ୍ଧା
ଶୀର୍ଣ୍ଣଦେହା ସେହି ଲୋକଟିକୁ
ଦେଖିଚକି ତୁମେ
କିମ୍ବା ଚିହ୍ନିଚକି ତାଙ୍କୁ ?
ସ୍ୱଚ୍ଛ ଆଖିରେ ଯା'ର
ଅବସନ୍ନ ଉଦାସ ଗୃହାଣୀ,
ସମ୍ମୁଖରେ ଅନିଶ୍ଚିତ ଅନ୍ଧ ଭବିଷ୍ୟତ,
ଆଉ ପୁଣି କ୍ଳାନ୍ତକର
ଦୀର୍ଘ ଯାତ୍ରାପଥ,
ପଶ୍ଚାତରେ ରକ୍ତଝରା-
ମର୍ମଥରା ଅଶ୍ରୁଳ କାହାଣୀ ॥

କାନ୍ଧରେ ତା' ଶୂନ୍ୟ ଝୁଲି
ହାତରେ ତା' ଭଙ୍ଗା ଭିକ୍ଷାଥାଳି,
ପେଟରେ ଅନନ୍ତ କ୍ଷୁଧା
ହୁତୁ ହୁତୁ କ୍ଷୁଧାର ଅନଳ ।
ମଥାରେ ତା' ଅସମ୍ଭବ ଦୁର୍ବିସହ ବୋଝ;
ସେ ଚାଲିଛି ନଇଁ ନଇଁ
ଏକବିଂଶ ଶତାବ୍ଦୀର ଦ୍ୱାରେ,
ପିଠିରେ ତା' ଘରବାହୀ-
ଓଟ ଭଳି କୁଜ ॥

ମୁଁ ଭେଟିଚି ସେହି ଲୋକଟିକୁ
ନୂଆଦିଲ୍ଲୀ ରାଜପଥେ
ଲାଲକିଲ୍ଲା ପାଶେ,
ଶତଦ୍ରୁ, ଯମୁନା, ଗଙ୍ଗା,
ବ୍ରହ୍ମପୁତ୍ର, ମହାନଦୀ ତୀରେ,
ଗୋଦାବରୀ, କୃଷ୍ଣା ଆଉ
କାବେରୀର ତଟେ ।

ବଙ୍ଗୋପସାଗର ନୀଳ ଜଳରାଶି କୂଳେ,
ଡିଗ୍‌ବୋଇ ବା ଡିବ୍ରୁଗଡ ତୈଳକୂପ ଧାରେ
ଆସାମର ଶତଶତ ଚାହା ବଗିଚାରେ,
ତାଲଚେର, ଝରିଆ ବା
ରାଣୀଗଞ୍ଜ କୋଇଲା ଖଣିରେ ।

ମୁଁ ଭେଟିଚି ବହୁବାର ସେହି ଲୋକଟିକୁ
ସହରର ଉପକଣ୍ଠେ
ଅପରିଷ୍କାର କୁଲିବସ୍ତିଟିରେ,
ମହାନଗରୀର କେଉଁ
ଜନାକୀର୍ଣ୍ଣ ଫୁଟ୍‌ପାଥ୍ ପରେ,
ମାଡ୍ରାଜ, କୋଚିନ ଅବା
ପାରାଦ୍ୱୀପ, ବୋମ୍ବାଇ ବନ୍ଦରେ ।

ବାରାଣସୀ ତୀର୍ଥକ୍ଷେତ୍ରେ
ପ୍ରୟାଗ-ସଂଗମେ
ଶ୍ରୀଗୁଣ୍ଡିଚା, କୁମ୍ଭମେଳା-ଜନାରଣ୍ୟେ ଅବା
ରାଜସ୍ଥାନ ଥର୍ ମରୁଭୂମେ ।

ବିନ୍ଧ୍ୟ ଉପତ୍ୟକା ଆଉ
ହିମାଳୟ ଉର୍ଦ୍ଧ ଭୂଭାଗରେ
ନୀଳଗିରି ପର୍ବତର
ଚାହା, କଫି, ରବର ଜଙ୍ଗଲେ ।

# ହେ ମହାଜୀବନ ! ୪୮

କଳାହାଣ୍ଡି ଶୁଖିଲା କ୍ଷେତରେ,
ବାଲିଆପାଳର ଶାନ୍ତ-କମନୀୟ
ଗୁଆଘନ ପାନର ବରଜେ,
କେରଳର ଉଦ୍ଧ୍ୱଶିର ନାରିକେଳ ବନେ,
ହରିଆନା, ପଞ୍ଜାବ, ବା
ୟୁପିର ଗହମ କ୍ଷେତେ
ମୁଁ ତାଙ୍କୁ ଭେଟିଛି କେବେ
ସକାଳେ ବା ଖରବେଳେ
ଅବା କେଉଁ ଅବସନ୍ନ କ୍ଳାନ୍ତ ସନ୍ଧ୍ୟାଗମେ ॥

ତୁମେ କି ଚହ୍ନିଛ ତାଙ୍କୁ
ଜାଣିଛକି ତୁମେ ତା'ର ନାମ ?
ମୁଁ କିନ୍ତୁ ଜାଣିଛି ତାଙ୍କୁ ଭଲକରି
ଖୁବ୍ ଭଲକରି
ଚିରକାଳ ସେଯେ ସର୍ବନାମ ।
ସେ ଗୋଟିଏ ରୂପ ନୁହେଁ
ସେ ଯେ ବହୁ ସମ୍ମିଳିତ
ଅପରୂପ ରୂପର ସମଷ୍ଟି,
ସେ ଗୋଟିଏ ବ୍ୟକ୍ତି ନୁହେଁ
ତା' ଭିତରେ ଅସହାୟ ବ୍ୟକ୍ତି କୋଟି କୋଟି
ନେଇଛନ୍ତି ମୂର୍ତ୍ତିମନ୍ତ ରୂପ,
ସେ ଆମର ପରିଚିତ/ବହୁ ପରିଚିତ
ଚିରନ୍ତନ ଆତ୍ମାର ଆତ୍ମୀୟ,
ଚିରକାଳ ଚଳମାନ୍
ଅଗଣିତ ପ୍ରାଣର ସ୍ୱରୂପ ॥

ଗୁଳଶା ଚଷମା-ପିନ୍ଧା
ଶୀର୍ଣ୍ଣଦେହା ସେହି ଲୋକଟିକୁ
ନ ଦେଖିଚ ଯଦି ତୁମେ
ଦେଖିନଅ ଥରେ
ଆପଣାର ସ୍ୱପ୍ନ-ସ୍ନିଗ୍ଧ ଅଗଣା ଭିତରେ ।

ଲକ୍ଷ୍ୟକର ସେ କେମିତି
ପକାଉଛି ପାଦ ଧୀରେ ଧୀରେ
ଶୂନ୍ୟଝୁଲ୍ କାନ୍ଧେ ବହି
ଅବସନ୍ନ ଉଦାସ ଆଖିରେ ।।

କମନୀୟ, ଲୋଭନୀୟ
ଆରକ୍ତ ଆପେଲ ଭଳି
ଆଗରେ ତା' ଝୁଲୁଅଛି
ଏକବିଂଶ ଶତାବ୍ଦୀର
ବର୍ଣ୍ଣମୟ ସୁବର୍ଣ୍ଣ-ଫଳକ,
ଗୁଳଶା ଚଷମା-ପିନ୍ଧା
ଲୋକଟି ଚୁଲୁଛି ଦେଖ
ଠଳି ଠଳି ଧୀରେ ଧୀରେ
ଅବସନ୍ନ କ୍ଳାନ୍ତ ପଦପାତେ,
ତା' ଆଖିର ଚକ୍ରବାଳେ
ଖେଳିଯାଏ ବହୁ ଦୂରେ
ଝଲମଲ୍ ସ୍ୱପ୍ନର ଝଲକ ।। □□

# ଟିକି ଝିଅଟିର ଦୁଃଖ

ଟିକି ଝିଅଟି
ଏକଲା ବସି ବସି
ଆଖି ମଳି ମଳି
ଧକେଇ ଧକେଇ କାନ୍ଦୁଚି ।

ଦି' ଆଖିରୁ ତା'ର ଝର ଝର ପଡୁଚି
ଧାର ଧାର ଲୁଣିଆ ଲୁହ
ଆଉ ଶୁଖିଯାଇଚି ଚନ୍ଦ୍ରଉଦିଆ ମୁହଁ ॥

ଏ ଲୁହ
ଏମିତି ଝର ଝର
ଦିନେ ହୁଏତ ପାଲଟିଯିବ
ଗୋଟିଏ ନିସ୍ତରଙ୍ଗ ନୀଳହ୍ରଦ,

ଆଉ ସେଇ ହ୍ରଦର
ଲୁଣି ଜଳରୁ
ସହସ୍ର ପାଖୁଡ଼ା ମେଲି
ହୁଏତ ଫୁଟି ଉଠିବ
ଦୁରନ୍ତ ଦୁଃଖର ଅଜସ୍ର ନୀଳକଇଁ ॥

ଠିକ ଝିଅଟିର
ଠିକ ଆଖିର
ଠିକ ଠିକ ଡୋଳା ଦୁଇଟି
ସତେ ଯେମିତ
ରସରେ ଟଳ୍ମଳ୍ ଟଳ୍ମଳ୍
ଦୁଇଟି କଳା ଅଙ୍ଗୁର,
ଖୁବ୍ ନିରୀହ ଓ ଲୋଭନୀୟ
ସରଳ ଅଥଚ ସୁନ୍ଦର ॥

କିନ୍ତୁ
ଏହି ଯୋଡ଼ିଏ ନିଷ୍ପାପ ଆଖିରେ
କିଏ କାହିଁକି ଭରିଦେଲା
ଦୁଃଖର କଳା ବଉଦ
ଯାହା ଝରି ପଡ଼ୁଛି
ଅଜସ୍ର ଅଶ୍ରୁର ବର୍ଷା ହୋଇ !!

ଠିକ ଝିଅଟିର
ନିରୀହ ଆଖିର ବେଳାଭୂମିରେ
ଯେଉଁଠି ଗଢ଼ ଗଢ଼ ଯାଉଛି
ଅସଂଖ୍ୟ ଲୁହର ଲହରୀ,
ସେଇଠି ବି ଲୁଚି ରହିଛି
ଟିକିଏ ସୂର୍ଯ୍ୟ ଭଳି
ଟିକିଏ ସ୍ୱପ୍ନ,
ଅଭୁତ ଆଲୋକରେ ଉଜ୍ଜ୍ୱଳ ॥

ଟିକି ଝିଅଟିର
ଗୋଲାପୀ ଓଠର ସୀମାନ୍ତରେ
ଯେଉଁଠି ଧ୍ୱନିତ ହେଉଛି
ଆର୍ତ୍ତ ଆକୁଳ କ୍ରନ୍ଦନ,
ସେଇଠି ବି ଉକୁଟି ଉଠିପାରେ
ସୁନେଲି ହସର ଅପୂର୍ବ ଫୁଲଝରି ॥

ବନ୍ଧୁ !
ଥରେ ସ୍ନେହର ଗଙ୍ଗୋତ୍ରୀରେ
ଧୋଇଦିଅ ତୁମର
ପାପ-ପଙ୍କିଳ ହାତ,
ଆଉ ସେହି ହାତରେ
ଭଲକରି ପୋଛି ଦିଅ
ତୁମ ଟିକି ଝିଅଟିର
ଜଳସ୍ନିଗ୍ଧ ଆଖିର ଲୁହ ॥

ସେ ଲୁହ ଝରି ଝରି
ଦୁରନ୍ତ ଦୁଃଖର
ନୀଳହ୍ରଦ ପାଲଟିବା ଆଗରୁ
ଦୁଏତ ହସି ଉଠିବ
କେଉଁଠି ସୁନେଲି ସ୍ୱପ୍ନ
ଗୋଟାଏ ଟର୍ଚ୍ଚିତ ସୂର୍ଯ୍ୟମୁଖୀ ଭଳି ॥ □□

# ଆଗନ୍ତୁକ

"କିନ୍ତୁ ସିଏ ନିଶ୍ଚୟ ଆସିବେ"
ଏକଥା ଜାଣିବା ସତ୍ତ୍ୱେ
ରାତି ରାତି ଉଜାଗର ରହି
ମୁଁ କଣ ତାଙ୍କ ପାଇଁ
ବସି ବସି ଜାଗର ଜାଳିବି ?
ନୀରବେ ପ୍ରତୀକ୍ଷା କରି
ଭୁଲି ସବୁ କିଛି
ବିତାଇବି ଦିନ ପରେ ଦିନ ?
ଅବା ପୁଣି ଧୂପ-ଦୀପ-ନୈବେଦ୍ୟ ସଜାଇ
ଫୁଲମାଳ ଗୁନ୍ଥି ଆଉ ରଚି ଅର୍ଘ୍ୟଥାଳୀ
ଉନ୍ମନା ରାଧିକା ପରି ଆକୁଳ ଆଖିରେ
ମୁହୂର୍ତ୍ତି ମୁହୂର୍ତ୍ତି ଧରି ରହିବି ଅନାଇଁ ??

କେମିତି ଆସିବେ ସିଏ
ମୋତେ ତା' ଅଜଣା ;
କିନ୍ତୁ ସିଏ ନିଶ୍ଚୟ ଆସିବେ ।
ସେଥିପାଇଁ ମୁଁ କଣ
ତାଙ୍କର ସେ ଆସିବା ବାଟରେ
ସ୍ୱାଗତ-ତୋରଣ ତୋଳି
ସଯତନ ବିଛାଇବି
ନକ୍ସାକରା କାଶ୍ମିରୀ ଗାଲିଚା ?
ସଜାଇବି ଘରକୁ ମୁଁ
ଭଲକରି ଆପଣା ହାତରେ ?

ଖଟ ଉପରେ ପାରିଦେବ କୋମଳ ବିଛଣା ?
ଢାଙ୍କିଦେବ ଫୁଲ୍‌ପକା ସଫେଦ ଚଦର ?
ଅବା ମୁହଁ ରଙ୍ଗଦେଇ
ଚକ୍‌ଚକ୍ କରିଦେବ
ଯେତେ ସବୁ ରଙ୍ଗଛଡ଼ା ଝରକା-କବାଟ ?
ମୁଁ କିନ୍ତୁ ପାରୁନି ଜାଣି
ସିଏ କଣ ସାଧାରଣ ଭଦ୍ରଲୋକଟିଏ,
ନା, କେଉଁ ହୁକୁମ୍ ଜାହିର୍‌କର
ଏକଛତ୍ର ଦୁର୍ଦ୍ଦାନ୍ତ ସମ୍ରାଟ ??

ସିଏ ବା ହୁଅନ୍ତୁ ସିଏ
କିନ୍ତୁ ସେ ଯେ ନିଶ୍ଚୟ ଆସିବେ
ଏକଥା ମୁଁ ଜାଣେ,
ଆଜି ହେଉ, କାଲିହେଉ, ଅବା ପରଦିନ !
ମାସେ ହେଉ, ବର୍ଷେ ହେଉ,
ବର୍ଷାଧିକ କାଳପରେ ହେଉ
ନିର୍ଦ୍ଦିଷ୍ଟ ତାରିଖେ ମୋର ଘର ଅଗଣାରେ
ତାଙ୍କର ସେ ଘରଘର
ପାଦଶବ୍ଦ ନିଶ୍ଚୟ ଶୁଭିବ ।

ଶାନ୍ତ ଗୋଧୂଳିରେ ଅବା
କେଉଁ ଏକ ପ୍ରଶାନ୍ତ ପ୍ରଭାତେ,
ନିର୍ଜନ ମଧ୍ୟାହ୍ନେ ଅବା
ଘନ ଘୋର ତମିର ନିଶୀଥେ,
ନିଶ୍ଚୟ ଆସିବେ ସିଏ
ବିନା ନିମନ୍ତ୍ରଣେ,
ଅଚହ୍ନା ଅତିଥି ପରି
ହୋଇ ଅନାହୂତ
ଧୀର-ଶାନ୍ତ-ନିଃଶବ୍ଦ ଚରଣେ ।।

'କେମିତି ଆସିବେ ସିଏ'
ଆଜିଠାରୁ ଭାବି ଲାଭ କଣ ?
ଚୋର ପରି ହେଉ ଅବା
ଭଦ୍ରଲୋକ ପରି
ଯେମିତି ତାଙ୍କର ଇଚ୍ଛା
ସେମିତି ଆସନ୍ତୁ ।

କିବା ଲାଭ ତାଙ୍କ କଥା
ଆଜିଠାରୁ ଏତେ ଭାବି ଭାବି,
କିବା ଲାଭ କୁହ ଦେଖି
ତାଙ୍କୁ ଏତେ ଗୁରୁତ୍ୱ ଦେବାରେ ??

ସିଏ ଯଦି ଏତେବଡ଼
ମାନ୍ୟଗଣ୍ୟ ଭଦ୍ରଲୋକ
ଚୋର ପରି ଲୁଚିଛପି
ଆସନ୍ତି କାହିଁକି ?
କାହିଁକି ମାନନ୍ତି ନାହିଁ
ତିଳେହେଲେ
ସାଧାରଣ ସୌଜନ୍ୟର ଶୁଭ୍ର ସୀମାରେଖା ?

କେତେବେଳେ କିଏ ଅବା
କେଉଁ ଅବସ୍ଥାରେ
ଥିବ ବା ନଥିବ ତାହା ନକରି ବିଚାର
ସମସ୍ତ ସୁବିଧା କଥା ତିଳେ ବି ନବୁଝି
ଅସମ୍ଭ୍ରମେ, ଅସତର୍କେ
ସେ କିଆଁ ଆସନ୍ତି ??

ଛାଡ଼ ତାଙ୍କ କଥା ।
ମୁଁ ତାଙ୍କୁ ଏତେବେଶୀ ଗୁରୁତ୍ୱ ଦିଏନା,
ଗୁରୁତ୍ୱ ଦିଏନା ତାଙ୍କ ଆସିବାରେ ଏତେ ।

ସେ ହୁଅନ୍ତୁ 'ଘନଶ୍ୟାମ' ଅବା 'ଶ୍ୟାମଘନ'
ମୁଁ କିନ୍ତୁ ରାଧିକା ସାଜି ବାସକସଜ୍ଜାରେ
ବିତାଇ ପାରିବି ନାହିଁ
ତାଙ୍କ ପାଇଁ
ମୁହୂର୍ତ୍ତ ମୁହୂର୍ତ୍ତ କିମ୍ବା ଦିନ ପରେ ଦିନ ।

"କେମିତି ଆସିବେ ସିଏ
କେବେ ବା ଆସିବେ"
ସେ କଥାକୁ ଗୁରୁତ୍ୱ ନ ଦେଇ
ନିଶ୍ଚିନ୍ତ ମନରେ ବସି ପିଏ ମୁହିଁ
ଚା' କପେ କପେ,
ବନ୍ଧୁ ଗହଣରେ କାଟେ
ମଧୁର ଆଳାପେ ;
ଋଷିମନେ ପଢେ ପୁଣି
'ମେଘଦୂତ', 'ଧୂପ' ଆଉ 'ଓମର ରୁବାଇ',
ନାତିକୁ ପଢ଼ାଏ ପାଠ,
ହରରଙ୍ଗୀ 'ଛବିବହି' ଖୋଲି,
ଲେଖେ ନିତି ଦୈନନ୍ଦିନ ଦିନଲିପି ମୋର,
ଖବର-କାଗଜ ପରେ ମୁଗ୍ଧ ଆଖି ମେଲି
ଦେଖେ ନିତି ବିଚିତ୍ର ଓ ଅଜବ ଖବର,
'ଲଘୁ କବିତା' ବି ଲେଖେ
ଲେଖେ ନାନା ଚିଠି
ପ୍ରିୟଜନେ ଦେଇ ମୋର ହୃଦୟର ପ୍ରୀତି ।

ବଗିଚାରେ ରୋପିଦିଏ
ନାନାଜାତି ଗଛଲତା, ଫୁଲ-ଫଳ ବୃକ୍ଷ,
ପ୍ରତିଟି ମୁହୂର୍ତ୍ତେ ଦେଖେ
ଜୀବନକୁ/ପୃଥିବୀକୁ
ମୁଗ୍ଧ ନେତ୍ରେ ହୋଇ ଆତ୍ମହରା ।।

କେମିତି ଆସିବେ ସିଏ
କେବେ ବା ଆସିବେ
ମୋତେ ତାହା ଜଣା ନାହିଁ
ତାହା ତାଙ୍କୁ ଜଣା,

ଅଜ୍ଞାତ, ଅଦୃଶ୍ୟ ଏକ
ଅନାଗତ ଆଗନ୍ତୁକ ପାଇଁ
କାହିଁକି କରିବି ଚିନ୍ତା ?
ମୋପାଖରେ ସତ୍ୟ ସିନା ପ୍ରତିଟି ମୁହୂର୍ତ୍ତ
ସତ୍ୟ ପୁଣି ଜୀବନର
ହସକାନ୍ଦ, ଭଲମନ୍ଦ
ଖରା-ବର୍ଷା-ଶୀତ ଆଉ
ବସନ୍ତର ମଧୁମୟ ଅନନ୍ତ ଝରଣା ।।□□

# ବାମନାବତାର

ପ୍ରଥମେ ରଖିଲି ପାଦ
ସସାଗରା ଧରଣୀ ଉପରେ,
ମୋର ଏହି ଦୃପ୍ତ ପଦଭରେ
ବିଦଳିତ ଶୁଷ୍କପତ୍ର ପରି
ଆଦିଗନ୍ତ ନିଖିଳ ପୃଥିବୀ
ନିମିଷକେ ଉଠିଲାତ ଥରି ॥

ହାତପାତି—
ଭିକ୍ଷା ମୁଁ ମାଗିଲି ଯେଉଁ
ଏକପାଦ ଭୂମି,
କ୍ରମେ ତାହା ବ୍ୟାପିଗଲା
କୁମେରୁ ସୁମେରୁ ବ୍ୟାପୀ
ଦିଗନ୍ତର ବିପୁଳା ଅବନୀ ॥

ତାପରେ ଥାପିଲି ମୋର
ଅନ୍ୟ ଏକ ପାଦ
ପରିବ୍ୟାପ୍ତ ନୀଳ ମହାକାଶେ
ବିଜୟର ଜୟଦୃପ୍ତ ସ୍ପର୍ଦ୍ଧିତ ଉଲ୍ଲାସେ ॥

ଖରଦୃପ୍ତ ପଦଘାତେ ମୋର
ପ୍ରକମ୍ପିଲେ ଚନ୍ଦ୍ର-ସୂର୍ଯ୍ୟ
ଗ୍ରହତାରା ନୀହାରିକାମାଳ,
ପ୍ରକମ୍ପିଲା ଛାୟାପଥ
ସାରାବିଶ୍ୱ ଗଗନମଣ୍ଡଳ ॥

ଅବଶେଷେ ନାଭିପଦ୍ମରୁ
ମୋ ତୃଷ୍ଣାର୍ତ୍ତ ପାଦ
ଯେବେ ଆଜି କଲି ମୁଁ ବାହାର,
କେଉଁଠି ଥାପିବି ତାରେ
ସମସ୍ୟା-ଶଙ୍କୁଳ ଏହି ଘୋର ଦୁଶ୍ଚିନ୍ତାରେ
ବୁଦ୍ଧିର କୁଣ୍ଡଳଚକ୍ର ଘୂରିଗଲା ମୋର ॥

ଖୋଜି ଖୋଜି ଅବଶେଷେ
କେଉଁଠାରେ ନ ପାଇ ମୁଁ ସ୍ଥାନ,
ଆପଣା ମସ୍ତକେ ମୁହିଁ
ଥାପିଦେଲି ଆପଣାର ତୃଷ୍ଣାର୍ତ୍ତ ଚରଣ ॥

ଆପଣାର ପ୍ରଜ୍ଞା-ଯଜ୍ଞେ
ଆପେ ମୁହିଁ ଚଢ଼ିଗଲି ବଳି,
ବଳୀକୁ ନ ଚାରି ତୃପ୍ତି
ନିଜେ ଆଜି ନିଜକୁ ମୁଁ ଦଳି
ଅତଳ ପାତାଳ ଭେଦି
ରସାତଳ ଦିଗେ
କ୍ରମଶଃ ମୁଁ ଯାଉଅଛି ଗଳି ॥ □□

# ଅରୁନ୍ଧତୀ

ଅରୁନ୍ଧତୀ !
ନକ୍ଷତ୍ର-ଖଚିତ ଦୂର ଆକାଶରୁ
ସପ୍ତର୍ଷିମଣ୍ଡଳରୁ
ଖସିଆସ ଧୀରେ ଧୀରେ
ପୃଥିବୀକୁ
ଏଇ ପୃଥିବୀକୁ ॥

ଖସିଆସ, ଖସିଆସ ତୁମେ
ଯୁଗ ଯୁଗାନ୍ତର ଧରି
ସ୍ଥାଣୁତ୍ୱର ବନ୍ଧନ ତୁଟାଇ ।
କେତେକାଳ ଏଇମିତି
ଉଦାସ ଆଖିରେ
ଶୂନ୍ୟର ଦୋଳରେ ଝୁଲି
ପୃଥିବୀକୁ ରହିଥିବ ଚାହିଁ ??

ମୁଁ ତୁମକୁ ଦେଇଯିବି
ଅଜସ୍ର ସୁରଭି ଭରି
ମଲ୍ଲୀଟିଏ କରି
ଫୁଟାଇବି
ଏଇ ମୋର
ଛାୟା-ସ୍ନିଗ୍ଧ କୁଞ୍ଜ ଲତିକାରେ ॥

ମୁଁ ତୁମକୁ ଆଦ୍ୟ ଆଷାଢ଼ର
ପ୍ରଥମ କଦମ୍ବ କରି
ହସାଇବି
ଏଇ ଆମ ନଈକୂଳ
କଦମ୍ବ ଶାଖରେ ॥

ବାନମସ୍ୟେ
ପ୍ରଦୂଷିତ ପୃଥିବୀର
ବିଷାପ୍ଲୁତ ଅଶାନ୍ତ ଜୀବନେ
ତମେ ଟିକେ ଶାନ୍ତିଦେବ
ଦେବ ଉଜ୍ଜ୍ୱଳତା,
ଆକାଶର ଛୁଆଁ ଟିକେ ଦେବ,

ଯାହାର ସେ ମିଳମିଳ
ଅନନ୍ତ ବ୍ୟାପ୍ତିରେ
ଆଉ ତୁମ ମିଳାଭ ଦୀପ୍ତିରେ
ହୃଦୟ-ଆକାଶ ହେବ ନକ୍ଷତ୍ରମାଳିନୀ ॥

ଅରୁନ୍ଧତୀ !
ସପ୍ତର୍ଷିମଣ୍ଡଳ ତେଜ ଏଇ ପୃଥିବୀକୁ
ରଣକ୍ଷୁବ୍ଧ ଏ ଅଶାନ୍ତ ଦଗ୍ଧ ପୃଥିବୀକୁ
ସତେ କଣ ଆସିବନି
ଆସିବନି ତୁମେ ? ? □□

# ସ୍କୁଟର

ଜୋରରେ ଛୁଟାଇ ଦିଅ ସ୍କୁଟର ତୁମର
ହିଁ ହିଁ, ଛୁଟାଇ ଦିଅ ଆହୁରି ଜୋରରେ,
ଯେମିତି କି ଆଖି ପିଛୁଳାକେ
ଉନ୍ମାଦନାଭରା ଏକ ଅପୂର୍ବ ପୁଲକେ
ପାରିହୋଇ ଯିବ ତୁମେ ଶହଶ ମାଇଲ ।

ଆଗରେ ଧାଉଁଛି ଦେଖ ଆହୁରି ଅନେକ
ଗାଡ଼ି-ଘୋଡା, ସ୍କୁଟର ଓ କାର୍
ଧାଡ଼ିବନ୍ଧି ଲାଗିଛି ଦେଖ ଲକ୍ଷ ଜନତାର ।
ରାଜପଥେ ଲମ୍ବିଯାଏ ଅଙ୍କାବଙ୍କା ନଈଭଳି
ସଂଖ୍ୟାହୀନ ଜନତାର
ଅସ୍ତବ୍ୟସ୍ତ ବନ୍ୟ ପଟୁଆର ॥

ସେ ଦୁର୍ଭେଦ୍ୟ ଭିଡର ଭିତରେ
ନିର୍ଭୟରେ / ବେପରୱା ଭାବେ
ତୁମେ ବି ଛୁଟାଇ ଦିଅ ତୁମର ସ୍କୁଟର୍,
ଅପୂର୍ବ ସୁଯୋଗ ଇଏ
ଅଘୋଷିତ ପ୍ରତିଯୋଗିତାର ॥

ଆପଣାର / ପାରିବାର ପରିଆର
ଏ ଏକ ରୋମାଞ୍ଚକର
ଅଦ୍ଭୁତ ଓ ମୁଗ୍ଧ ଅନୁଭୂତି,
ଦିଅ ଦିଅ / ଆହୁରି ବଢାଇ ଦିଅ
ତୁମେ ତୁମ ସ୍କୁଟରର ଗତି ॥

ସ୍କୁଟର ଯାଉଛି ଗଡ଼ି
କେତେବେଳେ ସିଧା ଅବା
କେତେବେଳେ ଖାଁଟିକ୍ ଗତିରେ
କାଟି କାଟି ଟ୍ରାଫିକର
ଚଳମାନ୍ ଉତ୍ତୁଙ୍ଗ ତରଙ୍ଗ ;

ସ୍କୁଟର ଛୁଟୁଛି ଅବା ଛୁଟେ ଆଉକିଛି
ଜାଣିହୁଏନା,
ମନେହୁଏ ଇଏ ଏକ
ଧାବମାନ୍ ଛୁଟନ୍ତ ତୁରଙ୍ଗ ॥

ଆରେ ଆରେ
ହଠାତ୍ କିନ୍ତୁ ଇଏ କଣ ହେଲା !
ସ୍ତବ୍ଧହେଲା କାହିଁ ସେହି ସ୍କୁଟରର ଗତି ?
ଇଏ କଣ ଗତି ନା ଦୁର୍ଗତି ?

କାହାର ପ୍ରଚଣ୍ଡ ଧକ୍କା
ସେହି ଦ୍ରୁତ ବେଗବାନ୍
ସ୍କୁଟରର ପଥରୋଧ କଲା ?
ଦେଖୁ ଦେଖୁ ଅକସ୍ମାତେ
ଏତେତେଣେ ବିଛୁରିତ ହେଲା
କି ବୀଭତ୍ସ ଲହଲହ
ସପର୍ଯ୍ୟନ୍ତ ରକ୍ତର ଫୁଆର !!

ଏଇମାତ୍ର ମୁହୂର୍ତ୍ତିକ ଆଗୁ
ଯିଏ ଜଣେ ବେଦରଓ୍ୱା ରାଜପୁତ୍ର ଭଳି
ଅମାନିଆ ପବନ-ଗତିରେ
ଛୁଟିଥିଲା ଏ ରାଜରାସ୍ତାରେ
ଦେଖ-ଦେଖ ଏବେ,
ରକ୍ତ ଜୁଡ଼ୁବୁଡ଼ୁ ତାର
ନିସ୍ତେଜ ଶରୀର
ପଡ଼ିଅଛି କି କରୁଣ ଅସହାୟ ଭାବେ ;
ଆଖି ତା' ଯାଇଛି ବୁଜି
କେଉଁ ମହାଶକ୍ତିର ପ୍ରଭାବେ ?

ସମୟ ନା ଦୁଃସମୟ ?
ଗତି ନା ଦୁର୍ଗତି ?
ଘଟଣା ନା ଦୁର୍ଘଟଣା ?
ସ୍ଥିତି ନା ଦୁଃସ୍ଥିତି ?
ଏ ପ୍ରଶ୍ନର ଉତ୍ତର ବା
କିଏ ଦେବ କୁହ ?
ବେଗକୁ ଚପିବା ପାଇଁ
ଇଏ ଯେଉଁ ଆରଣ୍ୟ ଆବେଗ
ଦୁର୍ବିସହ, ଅତି ଦୁର୍ବିସହ !!

ତଥାପି ଜୀବନ ଛୁଟେ
ଦୁରନ୍ତ ସ୍କୁଟର ଭଳି
ଲଙ୍ଘି ନାନା ଗଡ଼ାଣି ଉଠାଣି,
ଭେଟି ନାନା ଦୁର୍ଘଟଣା
ପାର୍ହୋଇ ଅଙ୍କାବଙ୍କା ମସୃଣ ବା
ବନ୍ଧୁର ସରଣୀ ।

ମନେହୁଏ ଜୀବନହିଁ ଗତି
ଗତିହିଁ ଜୀବନ
ଯେତିକି ନୂତନ ତାହା
ସେତିକି ବି ଚିର ପୁରାତନ ।

ସବୁ ଅସହାୟତାକୁ ଜୀର୍ଣ୍ଣକରି
ଆପେ ଜୀର୍ଣ୍ଣକରି
ଛୁଟୁଛି ଜୀବନ ଦେଖ
ଦୁରନ୍ତ ଜୀବନ
ଅତୀତରୁ ଭବିଷ୍ୟତ ଦିଗେ
ମହାକାଳ ରାଜରାସ୍ତା ପରେ
ବିଚିତ୍ର ଭଙ୍ଗିରେ ଏକ
ଗତିଶୀଳ ସ୍କୁଟରର ସମ ॥ □□

# ଅମରତ୍ୱ

"ଇନ୍ଦିରା ଗାନ୍ଧି ଅମର ରହେ
ଅମର ରହେ"
ଈଥରର ସମୁଦ୍ରରେ ଶବ୍ଦାୟିତ
ଏହିଭଳି ଲକ୍ଷ ଲକ୍ଷ ସ୍ଲୋଗାନର
ଉଦ୍‌ବେଳିତ ତରଙ୍ଗ ଭିତରେ
ହଜି ହଜି ଯାଉଥିବା
ସେ କର୍ଣ୍ଣିକା-ଅସହାୟା
ନାରୀ ମୂର୍ତ୍ତିଟିକୁ
ସୁଦୁର୍ଲଭ ଅମରତ୍ୱ
ଉପହାର ଦେବ ଅବା କିଏ ?

ଏପରି କେ ବ୍ରହ୍ମବେତ୍ତା ତେଜସ୍ୱୀ ପୁରୁଷ
ଅଛି ପୁଣି ଆମରି ଭିତରେ
ଯିଏ ସେହି ନଷ୍ପୃହ ନିଷ୍ପାପ ଶିଶୁ
ନଚିକେତା ପରି
ସ୍ଥିରଚିତ୍ତ, ଅଟଳ ବିଶ୍ୱାସେ
ଅନନ୍ତ ଜିଜ୍ଞାସା ନେଇ
ଭେଦିବାକୁ ମୃତ୍ୟୁର ରହସ୍ୟ
ମୁହାଁମୁହିଁ ଛିଡ଼ା ହୋଇପାରେ
ମୃତ୍ୟୁର ଦେବତା ପାଶେ
ପ୍ରଚଣ୍ଡ ସାହସେ ?

ଏପରିକେ କଷ୍ଟକଙ୍କ—
ପତିବ୍ରତା ମନସ୍ୱିନୀ ନାରୀ
ଅଛୁ ପୁଣି ମହାସତୀ ସାବିତ୍ରୀର ପରି
ଯିଏ ନିଜ ସତୀତ୍ୱରେ ମୁଗ୍ଧ କରି
ମହାକାଳ ମହିଷବାହନେ
ଦୁରନ୍ତ ମୃତ୍ୟୁର ପାଶୁଁ
ମୁକୁଳାଇ ଆଣିପାରେ
ଆପଣାର ପ୍ରିୟତମ
ସତ୍ୟବାନ୍ ଅମୂଲ୍ୟ ଜୀବନ ?

ଆମର କି ଶକ୍ତି ଅଛୁ
ଅମରତ୍ୱ ପ୍ରଦାନବୁ
ଆମେ ଯିଏ ବ୍ୟସ୍ତ ସଦା ପରସ୍ୱ ହରଣେ,
ଆମର କି ଶକ୍ତି ଅଛୁ
ଅମରତ୍ୱ ପ୍ରଦାନବୁ
ଆମେ ଯିଏ ହସ୍ତ ସଦା
ଆସନ୍ନ ମରଣେ ??

ଆମର କି ଶକ୍ତି ଅଛୁ
ଥର ଥର ହାତ ଟେକି
ଅପରକୁ ଅମରତ୍ୱ ଦେବୁ ଉପହାର ?
ଆମର କି ଶକ୍ତି ଅଛୁ
ଲୁଟିବୁ ଅମୃତକୁମ୍ଭ
ସ୍ୱାର୍ଥର ଚିତାଗ୍ନି ତଳେ
ଜଳ ଜଳ କଟି କଟି
ଆମେ ଯିଏ ହେଉଛୁ ଅଙ୍ଗାର ??

ଶଠତାର ମୁଖା ପିନ୍ଧି
ଛଳନାର ଅନ୍ତହୀନ ସମୁଦ୍ରେ ଗାଧୋଇ,
ରକ୍ତରେ ରଞ୍ଜିତ ନଜ
ସ୍ୱାଭସ୍ର କୁଣ୍ଠିତ ହାତେ
ସତ୍ୟ ଆଉ ଅହିଂସାର
ଜପାମାଳା ଗଡ଼ାଇ ଗଡ଼ାଇ,
ପୁଣ୍ୟ-ଶ୍ଳୋକ ସାଜିବାର
ଦୁରନ୍ତ ଇଚ୍ଛାର ଜାଲେ
ବନ୍ଦୀ ଆମେ ଯେତେ ସବୁ
ଅସହାୟ ଅସମର୍ଥ ମଣିଷର ଦଳ,
ଆମେ କି ପାରିବୁ ଖୋଲି
କାଳର କୁଟିଳ କୋଳେ
ଅମରତ୍ୱ ସିଂଦୁକର ଗୃହ ?
ଆମର ଆସିବା ଯିବା
ଯିବା ଓ ଆସିବା ସତ୍ତ୍ୱେ
ବଞ୍ଚିରହେ ଆମର ଏ
ସର୍ବଂସହା ବିପୁଳା ପୃଥ୍ୱୀ ।।

ଅମରତ୍ୱ ଆସେ ନାହିଁ
ଶୂନ୍ୟଭେଦୀ ସ୍ଲୋଗାନରେ
ଶୂନ୍ୟଗର୍ଭ ଧ୍ୱନିରେ ଶବ୍ଦରେ,
ଅମରତ୍ୱ ଆସେ ନାହିଁ
ଅପ୍ରମେୟ କ୍ଷମତାରେ
ଅପ୍ରମିତ ଅର୍ଥରେ ସ୍ତୁତିରେ,
ଅମରତ୍ୱ ଆସେ ନାହିଁ
କ୍ଷଣିକର ସହାନୁଭୂତିରେ ଅବା
କେଉଁ ଅନ୍ଧ ସ୍ତାବକର
ସ୍ୱାର୍ଥାନ୍ୱେଷୀ ପ୍ରଶଂସା ଭିତରେ,

ଆସେ ନାହିଁ ଅମରତ୍ୱ
ମୋହମୁଗ୍ଧ ମୁହୂର୍ତ୍ତିର
ଅଜସ୍ର ଅଶ୍ରୁରେ ସିକ୍ତ
ସାମୟିକ ସମବେଦନାରେ ॥

ବୃନ୍ତକୁ କୁସୁମ ପରି
ଫୁଲକୁ ସୁଗନ୍ଧ ପରି
ବୀଣାକୁ ଝଙ୍କାର ପରି
ନଦୀକୁ ତରଙ୍ଗ ପରି
ଅମରତ୍ୱ ଆସେ ନିଜ
ମହୀୟାନ୍ କୃତିରେ କର୍ମରେ,
ଅମରତ୍ୱ ଲେଖାହୁଏ
କୋଟି କୋଟି ମଣିଷର
ଆକୁଳ ଅଶ୍ରୁରେ ଭିଜା
ଚିରନ୍ତନ ସ୍ମୃତିର ଲିପିରେ
ଅମଳିନ କାଳର ମର୍ମରେ ॥

ଧୀର ଶାନ୍ତ ପଦକ୍ଷେପେ
ଅମରତ୍ୱ ଆସେ
ନୀରବରେ ନିଃଶବ୍ଦରେ
ନିର୍ଜନ ରାତିରେ କୋଳେ
ଟୁପ୍‌ଟୁପ୍ ଝରୁଥିବା
ଟୁପ୍‌ଟାପ୍ କାକରଟୋପାର ପରି
ପରଦିନ ସକାଳକୁ ଯାହା
ମୁକ୍ତାଭଳି ହସି ଉଠେ ଅଦ୍ଭୁତ ଝଲକେ,
ଝଲମଲ୍ ସୂର୍ଯ୍ୟାଲୋକେ
ଆଖିର ପଲକେ ॥

ତେଣୁ ହେ ଅମିତତେଜା
ବିତନ୍ଦ୍ର ଶକ୍ତି-ସମ୍ଭୂତା
ମହୀୟସୀ ନାରୀ !
ଲାଲ୍ ଟକ୍ ଟକ୍ ତାଜା ରକ୍ତରେ ତୁମର
ଅସ୍ତ୍ରକୁ ପଜାଉଥିବା
କଣ୍ଠପସ୍ଥ ନବୋଧର
ଲେଲିହାନ ଜିଘାସା-ଅନଳେ
ହୁତୁହୁତୁ ଜଳୁଥିବା
ଆକୁମାରୀ ହିମାଚଳ ଭାରତବର୍ଷର
କୋଟି କୋଟି ଶ୍ରମଜୀବୀ
ବିଶ୍ୱକର୍ମା ମଣିଷର ସ୍ମୃତିରେ, ସ୍ୱପ୍ନରେ
ଅମରତ୍ୱ ଦାବି କର ;

ଅମରତ୍ୱ ଦାବି କର
ଲକ୍ଷଲକ୍ଷ ବୁଦ୍ଧିଜୀବୀ
ବର୍ଦ୍ଧିମାନ୍ ବିବେକର ପାଶେ,
କଟିଗଲେ ମୂହୂର୍ତ୍ତର ଭାବପ୍ରବଣତା,
ଶୂନ୍ୟରେ ମିଳାଇ ଗଲେ
ଶୂନ୍ୟଗର୍ଭ ସ୍ଲୋଗାନ୍ ବା ଧ୍ୱନି
ଆପଣା ଶକ୍ତିରେ ଆପେ
ଖୋଜିନିଅ ଅମରତ୍ୱ ସିନ୍ଦୁକର ଚାବି,
ଆପଣା ଶକ୍ତିରେ ଆପେ
ହୁଅ ତୁମେ ଅମୃତ-ସନ୍ତାନ । □□

# ତିମିର-ସୂର୍ଯ୍ୟ

ସତେଇଶି ଦୀର୍ଘ ବର୍ଷ ପରେ
ତମେ ଆଜ ପାରହୋଇ
ଆସିଲ ଯେମିତି
ସତେଇଶି ଦୀର୍ଘତମ—
ତିମିରିତ ଆଲୋକର ବର୍ଷ,

ଏବେ ଯେ ପଡୁଛି ଝରି
ତୁମର ଆଲୋକ-ବର୍ଷା
'କେପ୍‌ଟାଉନ' ବା-
'ଜୋହାନ୍‌ସବର୍ଗ'ରେ ନୁହେଁ
ଦେଶେ ଦେଶେ
ସ୍ପନ୍ଦମାନ ହୃଦୟେ-ହୃଦୟେ ;

ଯାଉଛି ସଞ୍ଚରି
ତୁମର ଲୋହିତ ରଶ୍ମି
'ପ୍ରିଟୋରିଆ'ର ଆକାଶରେ ନୁହେଁ
ମୁକ୍ତିକାମୀ ମଣିଷର
ସ୍ପନ୍ଦିତ ପ୍ରତିଟି ଆତ୍ମାରେ ॥

ହେ ମହାଜୀବନ ! ୭୨

ତୁମେ କି ଅଗସ୍ତି ?
ସମ୍ମୁଖେ ତୁମର ଆଜ ଅବନତ
ନଭସ୍ପର୍ଶୀ ସମୁଦ୍ଧତ ତୁଙ୍ଗ ବିନ୍ଧ୍ୟାଚଳ,
ଦାମ୍ଭିକତା-ମହାମେରୁ
ବର୍ଣ୍ଣଭେଦ-ଅଚଳାୟତନ ।

ତୁମେ ଆଜ
ଏକା ଆଞ୍ଜୁଳାକେ
ଦେଇଅଛ ଚଳୁକରି
ଶ୍ୱେତାଭିମାନର ସ୍ଫୀତ
ତରଙ୍ଗିତ ସପ୍ତ ମହାସିନ୍ଧୁ,
ତୁମ ଦୃପ୍ତ ପଦକ୍ଷେପେ
ସ୍ତବ୍ଧ ଆଜ ସସାଗରା ଧରା
ହତବାକ୍ ଦଶଦି ଦିଗନ୍ତ ॥

ତୁମେ କଣ
ଅଭିଜାତ 'ଶ୍ୱେତ' ରକ୍ତ-ଧମନୀରେ ଆଜ
ଖେଳାଇବ
'କୃଷ୍ଣ' ରକ୍ତ-ପ୍ରବାହର ତଡ଼ିତ୍ ସ୍ପନ୍ଦନ ?

ତୁମେ କଣ
ଶ୍ୱେତାଙ୍ଗର ସ୍ନିଗ୍ଧ ଭାଲପଟେ
ଆଙ୍କିଦେବ ଯୁଗାନ୍ତର ପାଇଁ
କୃଷ୍ଣାଙ୍ଗର ବିଜୟ-ଚନ୍ଦନ ?

ତମେ କଣ
ଅନ୍ଧକାର ଆଫ୍ରିକାରେ
ଜାଳଦେବ ଶତ ଶତ-
ଅଗ୍ନିଗର୍ଭା ସୂର୍ଯ୍ୟର ମଶାଲ ?

କିନ୍ତୁ ତୁମେ ନିଜେ ହିଁ ତ ତେଜସ୍ୱାନ୍ ସୂର୍ଯ୍ୟ
ପାରିହୋଇ ଏଇତ ଆସିଲ
ସଚେତଇଣି ଦୀର୍ଘତମ ଆଲୋକର ବର୍ଷ
ପ୍ରସ୍ତରିତ ତିମିର-କାରାରୁ,
ତୁମର କିରଣ ସ୍ପର୍ଶେ
ତରଳିଛି ଏଇ ଦେଖ
ସ୍ତୂପୀକୃତ ତୁଷାରର
ଅଭ୍ରଭେଦୀ 'ଶୁଭ୍ର' ମହାମେରୁ ॥

ଯୌବନର ବର୍ଣ୍ଣମୟୀ
ସୁରଭିତ ପଦ୍ମର କୋରକ,
ପ୍ରଣୟର ମଧୁମତ୍ତ ଆଦ୍ୟ ଅଭିସାର,
ସବୁକୁ ପଛରେ ଫିଙ୍ଗି
ଦିନେ ପରା ତୁମେ ମାଗିଥିଲ
ମୁଠାଏ ମହାର୍ଘ୍ୟ ମୁକ୍ତି
ମାନବର ଅଧିକାରେ ଦୀପ୍ତ !
ସେଥିପାଇଁ ଲଢ଼ିଥିଲ,
ସେଥିପାଇଁ ସଢ଼ିଥିଲ
କାରାଗାର ଅରନ୍ଧ୍ର ଅନ୍ଧାରେ
ଦୀର୍ଘବର୍ଷ ଧରି,
ଆଜି କିନ୍ତୁ ଅବାରିତ
ଗିରିଝର ପରି
ପାଷାଣ-ବନ୍ଧୁର ପଥ କରି ଅତିକ୍ରମ
ଅବିରତ ଆସୁଅଛ ଝରି
ପୃଥିବୀର ପଥେ ପଥେ
ଜନପଦେ, ସହରେ, ନଗରେ
ମାନବର ଚେତନାର
ପ୍ରସାରିତ ମୁକ୍ତ ବେଳାପଟରେ
ଯାଉଅଛ ମାରିବେ ସଞ୍ଚରି ॥

ତମିସ୍ରତ ଆଫ୍ରିକାର
ହେ ସୂର୍ଯ୍ୟ ! ତମିସ୍ର-ସୂର୍ଯ୍ୟ !
ଦୀର୍ଘ ଗ୍ରସି କର ଅନ୍ଧତମ
ତୁମେହିଁତ କରିଲ ପ୍ରମାଣ,
ସଂଗ୍ରାମୀର ବଜ୍ରବାହୁ
କାଚର ମୀନାର ପରି
ଭାଙ୍ଗିପାରେ ଅବଲୀଳା କ୍ରମେ
ଅହଂକାରୀ ଶାସକର
ଦୁର୍ବିନୀତ ଗର୍ବ-ଅଭିମାନ ।

ଭୂଲୁଣ୍ଠିତ କରିପାରେ ପୁଣି
ଯେତେ ଯେତେ ଶକ୍ତିଶାଳୀ
ମାନବକ ବିଭେଦର 'ବର୍ଲିନ୍ ପ୍ରାଚୀର',
ଲଙ୍ଘିପାରେ ଅବଶେଷେ
ବେଗବାନ୍ ସମୟର
ଝଡ଼-କ୍ଷୁବ୍ଧ ଦୁର୍ଲଙ୍ଘ୍ୟ ସାଗର ॥

ତେଣୁ ଆଜ ବହୁଦୂରେ
ଏ ମାଟିରେ
ତୁମର ଆତ୍ମାର
ନବଡ଼, ନକଟତମ ମୁଗ୍ଧ କବିଟିଏ
କାବ୍ୟଲିପି ଦିଏ ଉପହାର
ଜଣାଏ ପ୍ରଣାମ,
କୃଷ୍ଣ ମଣିଷର ଆହେ
ଶେଷହୀନ-ସଂଗ୍ରାମର ସାଥୀ,
ଦୀର୍ଘଜୀବୀ ହୁଅ ତୁମେ
ଦୀର୍ଘଜୀବୀ ହେଉ ତୁମ
ଆଲୋକତ ମୁକ୍ତିର ସଂଗ୍ରାମ ॥ □□

# ବାଲିଆପାଳ

ଭୂଗୋଳର ମାନଚିତ୍ରେ
ସରକାଷ୍ଟ ନଥିପତ୍ରେ
ହେ ବାଲିଆପାଳ !
ତୁମେ ଆଜ ଖାଲି ଏକ ଗାଁଟିଏ ନୁହଁ,
ନୁହଁ ଏକ ନାଆଁ ;
ତୁମେ ଏକ ଉଦାତ୍ତ ଓ ଆଗ୍ନେୟ ଆହ୍ୱାନ
ତୁମେ ଏକ ମୂର୍ତ୍ତିମନ୍ତ ତୀବ୍ର ପ୍ରତିବାଦ ;

ଅଗଣିତ ଜୀବନ-ପକ୍ଷୀର
ତୁମେ ଏକ ଶାନ୍ତିର କୁଳାୟ
ତୁମେ ଏକ ମଧୁମୟ ଉଲ୍ଲସିତ ଜୀବନର
ଚରମ ଓ ପରମ ଆସ୍ୱାଦ ॥

ଶତ ଶତ ଶାନ୍ତିକାମୀ
ଶ୍ରମଜୀବୀ ମଣିଷର
ଢ଼ଳଢ଼ଳ ନୟନ ଡୋଳାରେ
ତୁମେ ଏକ ଝଲ୍‌ମଲ୍ ମନୋରମ ଛବି ;

ଧୂସରିତ ଧରଣୀରେ କୁସୁମିତ ଜୀବନର
ତୁମେ ଏକ ସୁଶୀତଳ
ଶାନ୍ତ ମରୁଦ୍ୟାନ,
ତୁମେ ବହ୍ନି ସ୍ୱପ୍ନଭରା ସୁରଭିତ ସକାଳର
ପୁଲକିତ ପ୍ରାଣର ପୁରବୀ ॥

ଭଲପାଇବେ ବଞ୍ଚିବାର
ତୁମେ ଏକ ତୁଚମନ୍ତ
ତୁମେ ଏକ ଶୁଚମନ୍ତ
ଗୋପନୀୟ କଳା,

ଶ୍ରମ ଆଉ ସୃଜନର
ତୁମେ ଏକ ମହାକାବ୍ୟ
ଅବିଶ୍ରାନ୍ତ ଠୁକୁଠୁକୁ ନୀରବ ନିହଣ ;

ତୁମେ ଖାଲି ମାଟି ନୁହଁ
ବାଲି ଓ କାଦୁଅ ନୁହଁ
ନୁହଁ ଖାଲି ଗଛଲତା-ବଣବୁଦା
ପାଣି ଓ ପବନ ;

ତୁମେ ଏକ ବେଗବତୀ-
ମଧୁମତୀ ନଦୀର କଲ୍ଲୋଳ

ତୁମେ ଏକ କୁଳୁକୁଳୁ
ପ୍ରାଣବନ୍ତ ସ୍ରୋତର ପ୍ଳାବନ ।।

ଛାୟାଚ୍ଛନ୍ନ ତୁମ ଇଲାକାରେ
ଗୁଣୁଗୁଣୁ ଶବ୍ଦକରି
ଅବିରତ ଶତ ଶତ ମହୁମାଛି ଘୂରେ ;
ପୂରିଉଠେ ଅଗଣିତ ମହୁର ସୋରେଇ ;

ନୀଳକାନ୍ତ ତୁମ ଆକାଶରେ
ଶଙ୍ଖଚିଲ ପକ୍ଷମେଲି
ଉଡ଼ିଯାଏ ଦୂର ଦିଗନ୍ତରେ
ଗେଣ୍ଡାଳିଆ ଡେଣା ଦିଏ ଝାଡ଼ି,
ଶଙ୍ଖଶୁଭ୍ର ତୁଷାର କଣିକା ପରି
ପରି ପଡ଼େ ଝରି ।

ଝିଲମିଲ ତୁମ ଦରିଆରେ
ତରଙ୍ଗର ତାଳେ ତାଳେ
ଢେଉ କାଟି କାଟି
ନାଚ ନାଚ ଘସିଯାଏ ଅଜସ୍ର ନଉକା
ମତ୍ସ୍ୟର ସନ୍ଧାନେ ;

ସାମୁଦ୍ରିକ ଅଭିଯାନ ସାରି
ସଂଖ୍ୟାହୀନ କଳା କଳା
ଲବଣାକ୍ତ ଫୁଙ୍ଗୁଳା ଦେହର
ଅବସନ୍ନ ପଦଶବ୍ଦ ଫେରେ
ସନ୍ଧ୍ୟାଗମେ—କ୍ଲାନ୍ତ ଅପରାହ୍ନେ ॥

ମାଇଲ୍ ମାଇଲ୍ ବ୍ୟାପୀ
ନଡ଼ିଆ ଓ କାଜୁର ଜଙ୍ଗଲ
ଅଗଣନ-ଗୁଳ୍ମାଘନ-ଘାସର ବରଜ ;
ବାଲିର ଗାଲିଚୁ ପରେ
ବୁଣିଦିଏ ଶ୍ୟାମଳ ମୁରୁଜ ।

କନ୍ଦମୂଳ ଚିନାଆଳୁ
କାକୁଡ଼ି ଓ ତରଭୁଜ ଲତା
ଧୂସର ମାଟିକୁ ତୁମ
ପିନ୍ଧାଇଚି ଚିର ସବୁଜତା ;

ଦେଇଅଛୁ ସୁବିପୁଳ
ସ୍ୱପ୍ନଭରା ଜୀବନର ଆଶା,
ଶ୍ରମଜୀବୀ ମଣିଷର ବ୍ୟାକୁଳ ବୁକୁରେ
ଭରିଅଛୁ ବଞ୍ଚିବାର
ଅଦମ୍ୟ ଓ ଅନନ୍ତ ପିପାସା ॥

ଆଜି କିନ୍ତୁ କାହାର ଏ
ସର୍ବନାଶୀ ଅଶୁଭ ଇଙ୍ଗିତେ
ହଠାତ୍ ଏକ ମଦମତ୍ତ
ଲୁବ୍‌ଧକର ଶ୍ୟେନଦୃଷ୍ଟି
ଶରନିକ୍ଷର ଭଳି ;
ତୁମର ଶ୍ୟାମଳ ଅଙ୍ଗେ
ଦପ୍ ଦପ୍ ଉଠିଅଛି ଜଳି ??
ଛିନ୍‌ଭିନ୍ କରିବାକୁ ତୁମର କୋମଳ ଦେହ
କଣ୍ଡଭରି କରିବାକୁ
ଟହଟହ ଶୋଣିତ ଶୋଷଣ,
ଜଘନ୍ୟ ନିଷାଦ ଏକ ଲକ୍ଷ୍ୟକରି ବକ୍ଷ ତୁମ-
କରୁଅଛି ନିର୍ବିଘ୍ନରେ
ଅଗ୍ନିବର୍ଷୀ କ୍ଷେପଣାସ୍ତ୍ର-
ଶରର ସନ୍ଧାନ ।

ଦାନବିକ ଅଟ୍ଟହାସେ
ମାନବିକ ଚେତନାକୁ ଦଳି ;
ନବରୂପେ ଲଭି ଜନ୍ମାନ୍ତର
ଆଜି ସେ ଆଦିମ ବ୍ୟାଧ
ସ୍ତବ୍‌ଧ କରେ ମର୍ମଥରା ତୁମର କାକଳି ॥

ତୁମେ କିନ୍ତୁ ଅଜ୍ଞାତରେ
ଧୂଳିଖିଆ ପୁରାଣ-ପୃଷ୍ଠାର
ନିରୀହ ଓ ଅସହାୟ
କ୍ରୌଞ୍ଚପକ୍ଷୀ ପରି
ନୀରବରେ-ନିଃଶବ୍ଦରେ
ତଳିବ ମାଟିରେ,
ଭାଗ୍ୟକୁ ଆଦରି ପୁଣି
ବରିନେବ ମୃତ୍ୟୁ ତୁମ
ଅତି ସହଜରେ ।

ତୁମେ ଏକ ବଜ୍ରବାହୁ
ସଂଗ୍ରାମୀ ଜଟାୟୁ,
ଉଦାତ୍ତ ଚିତ୍କାରେ ତୁମ
ଥରହରେ ଜଳ ସ୍ଥଳ
ଆକାଶ ଓ ବାୟୁ ।

ତୁମେ ବି ଜୀବନଲୋଖି
ମୁକ୍ତପକ୍ଷ ଶାନ୍ତିର କପୋତ,
କୋଟି କୋଟି ଆକୁଳିତ
ଆଖିର ଆକାଶ ତଳେ
ବିଶ୍ୱଭୟେ ନେଇଛ ଆଶ୍ରୟ ;
ତୋଳିଅଛ
ପ୍ରତିବାଦ ମୁଖରିତ
ଝଡ଼ର ସଙ୍ଗୀତ ।

ଅସଂଖ୍ୟ ବାଲ୍ମୀକି କଣ୍ଠୁ
ତେଣୁ ଆଜ ତୁମପାଇଁ
ଝରିଯାଏ ଶ୍ଲୋକ,
ତୁମେ ଏକ ଶକ୍ତିଶାଳୀ
ଦୁର୍ବିନୀତ ପ୍ରାଣର ପ୍ରତୀକ ।।

ଏ ଦେଶର ମାନଚିତ୍ରେ
ତୁମେ ତେଣୁ ଆଜ ଏକ
ସାଧାରଣ ଗାଁଟିଏ ନୁହଁ ;

ସରକାରୀ ନଥିପତ୍ରେ
ତୁମେ ଏକ ମାମୁଲି ଓ
ସାଧାରଣ ନାଁଟିଏ ନୁହଁ ;

ତୁମେ ଏକ ଧାର୍ତ୍ତିମାନ୍
ମାନବିକ ବିବେକର
ପ୍ରଚଣ୍ଡ ଓ ଉଦାତ୍ତ ଆହ୍ୱାନ ;

ତୁମେ ଏକ ସ୍ୱତଃସ୍ଫୂର୍ତ୍ତ
ବିଦ୍ରୋହୀ ଚେତନା ;
ପ୍ରତିବାଦର ପ୍ରତିଶବ୍ଦ ;
ସମର-ଶଙ୍କିତ ଶତ
ଶାନ୍ତିପ୍ରିୟ ମଣିଷର ଆଶା ;
ତୁମେ ଏକ ସୁବିପୁଳ ଜୀବନବୋଧର
ସହଜ ଓ ଶୁଦ୍ଧ ପରିଭାଷା ।

ଆଗାମୀ ଶତାବ୍ଦୀ ପାଇଁ
କୋଟି କୋଟି ତର୍ଜମାର
ତୁମେ ଏକ ସମ୍ମିଳିତ ସତର୍କ ସଙ୍କେତ ;
ସହସ୍ର ମିଳିତ କଣ୍ଠେ
'ଓଁ ଶାନ୍ତି'ର ତୁମେ ଏକ
ନିର୍ଭୁଲ ଓ ସ୍ପଷ୍ଟ ଉଚ୍ଚାରଣ,
ତୁମେ ପୁଣି ପ୍ରାଣସ୍ଫୂର୍ତ୍ତ ଜୀବନ-ବେଦର
ପବିତ୍ର ପ୍ରଣବ ଧ୍ୱନି ;
ତୁମେ ଏକ ଅଗ୍ନିସ୍ନାତ
ଲୋହିତ ଓ ଝକ୍ ଝକ୍
ଶାଣିତ ଇସ୍ପାତ ॥ □□

# ଶବ୍ଦଟିଏ : ସ୍ୱାଧୀନତା

ଗୁଚ୍ଛଗୋଟି ବର୍ଣ୍ଣମାଳା
ଗୁଚ୍ଛଗୋଟି ମାତ୍ରାଯୁକ୍ତ ହେଲେ
ଶବ୍ଦଟିଏ ସହଜରେ
ଅତି ସହଜରେ
ସାଧାରଣ କାଗଜ-ପୃଷ୍ଠାରେ
ଲେଖା ହୋଇଯାଏ ।

କିନ୍ତୁ ସେହି ସାଧାରଣ ଶବ୍ଦଟିଏ ନୁହେଁ
ଯେ ଯେମିତି ଲେଖିଦେଲେ
ନିଜ ଇଚ୍ଛାମତେ
ଅର୍ଥର ପାଖୁଡ଼ା ତା'ର
ମୁଦ୍ରିତ ଗୋଲପ ଭଳି
ପ୍ରସ୍ତ ପ୍ରସ୍ତ ହୋଇ
ଚହଟାଇ ରୂପ ପୁଣି
ମହକାଇ ବାସ
ଖୋଲିଯିବ-ମେଲିଯିବ
ସହଜରେ—ଏତେ ସହଜରେ ।।

ସେତ ନୁହେଁ ସାଧାରଣ ଶବ୍ଦଟିଏ ଯା'ର
ଅର୍ଥକୁ ଖୋଜିଲେ ତୁମେ
ପୃଥିବୀର ପ୍ରତିଟି ଭାଷାର
ଯେ କୌଣସି ଅଭିଧାନ ଖୋଲି
ପାଇବନି ସଂଜ୍ଞା ତା'ର
ପାଇବନି ପ୍ରକୃତ ଉତ୍ତର,
ହତାଶାର ଅନ୍ତହୀନ ଆବର୍ତ୍ତ ଭିତରେ
ଚକ୍ରାକାରେ ଘୂରିବାହିଁ ହେବ ସିନା ସା'ର ॥

ଶବ୍ଦଟିଏ
କେବଳ ପାରନ୍ତି ଆଙ୍କି ରୂପ ତା'ର
ତୂଳୀରେ-କାଳିରେ ?

ଶବ୍ଦଟିଏ
ପ୍ରମୂର୍ତ୍ତ ହୋଇଛି ଖାଲି
ଯୁଗେ ଯୁଗେ କାଳେ କାଳେ
ଦେଶେ ଦେଶାନ୍ତରେ
ଫାଶୀଖୁଣ୍ଟେ-କାରାଗାରେ
ଶୂଳରେ-ଗୁଳିରେ ॥

ଶବ୍ଦଟିଏ : 'ସ୍ୱାଧୀନତା'
ଶବ୍ଦରେ-ଧ୍ୱନିରେ ଯାର
କମ୍ପି ଉଠେ ଆଦିଗନ୍ତ ଆକାଶ ଅବନୀ,
ଶବ୍ଦଟିଏ : 'ସ୍ୱାଧୀନତା'
ଉଚ୍ଚାରଣ ମାତ୍ରେ ଯାହା
ପ୍ରତିଟି ଅନ୍ତର ତଳେ
କାଳେ କାଳେ, ତାଳେ ତାଳେ
ତୋଳେ ପ୍ରତିଧ୍ୱନି ॥

ଛନ୍ଦେ ଛନ୍ଦେ
ମୁକ୍ତିର ଆନନ୍ଦେ
ଶରୀରର ପ୍ରତି ରନ୍ଧ୍ରେ
ପ୍ରତି ତନ୍ତ୍ରୀ ହୁଅଇ ସ୍ପନ୍ଦିତ,
ଶବ୍ଦଟିଏ : 'ସ୍ୱାଧୀନତା'
ମୃତ୍ୟୁକୁ ଅମୃତ କରେ
କାନେ କାନେ ଗାଇଯାଏ
ଉଦ୍ଦୀପିତ ଜୀବନ-ସଙ୍ଗୀତ ॥

ଚପଳ-ଚରଣା କେଉଁ ଗାଉଁଲି ଝିଅଟି ପରି
ଅଙ୍କା ବଙ୍କା ନଈଟିଏ ପାହାଡ଼ରୁ ଝରି
ତରଙ୍ଗେ ତରଙ୍ଗେ ନାଚ ତୋଳି ଶିହରଣ
ଯେଉଁ ଛନ୍ଦେ ବହିଯାଏ ···
ତାହାହିଁ ତ ସ୍ୱାଧୀନତା ।

ଗାଇଆଳ ପିଲାଟିଏ ଜନହୀନ ବିଜନ ପ୍ରାନ୍ତରେ
ବାଉଁଶ ବଂଶୀଟିରେ ଶରତର ଶାନ୍ତ ଗୋଧୂଳିରେ
ତାଳେ ତାଳେ ତୋଳେ ଯେଉଁ
ପ୍ରାଣଖୋଲା ମଧୁର ମୂର୍ଚ୍ଛନା ···
ତାହାହିଁ ତ ସ୍ୱାଧୀନତା ।

ସୀମାହୀନ ଆକାଶର କଳା କଳା ବଉଦ ଭେଳାରେ
ଭାସି ଭାସି ପକ୍ଷୀଟିଏ କେଉଁ ଦୂର ବାଲୁକା-ବେଳାରେ
ଗାଏ ଯେଉଁ ମନ୍ତ୍ର୍ୟଥିବା ମଧୁର ସଙ୍ଗୀତ ···
ତାହାହିଁ ତ ସ୍ୱାଧୀନତା ॥

ସ୍ୱାଧୀନତା, ଶ୍ୱେକଲର ଗୀତ
କୃଷକର ମୁଠି
ସ୍ୱାଧୀନତା, ଶୋଷିତର ଆଶା
ଶ୍ରମିକର ଲାଠି,
ସ୍ୱାଧୀନତା ଅର୍ଥ ନୁହେଁ
କେଉଁ ଦେଶେ
କେଉଁ କାଳେ
ଲାଞ୍ଛନା ଓ ଅପମାନ
ବେଗାରି ଓ ବେଠି ॥

ସ୍ୱାଧୀନତା ଅର୍ଥ ନୁହେଁ
ଶୋଷଣର ନାଗପାଶ
ଶାସନର ଲୁହାର ଶୃଙ୍ଖଳ,
ସ୍ୱାଧୀନତା ଅର୍ଥ ନୁହେଁ
ଶାଣିତ ସଙ୍ଗୀନ ମୁନ
ଅନ୍ଧକାର ରୁଦ୍ଧ କାରାଗାର ॥

ସ୍ୱାଧୀନତା ଅର୍ଥ ନୁହେଁ
ଶାସକର ଗୁଣଗାନ
ଏକଛତ୍ର ଶାସନର ସ୍ତୁତି,
ସ୍ୱାଧୀନତା ଅର୍ଥ ନୁହେଁ
ତିଳେ ତିଳେ ମୃତ୍ୟୁ ଆଉ
ପ୍ରାଣଥବା ଉପ୍ସର ବଞ୍ଚୁତ ॥

'ସ୍ୱାଧୀନତା' ଶବ୍ଦଟିଏ ନୁହଁଇ ତ ଖାଲି
'ସ୍ୱାଧୀନତା' ଏକ ଅନୁଭବ,
'ସ୍ୱାଧୀନତା' ମଧୁମୟ ଜୀବନର ସ୍ୱାଦ
'ସ୍ୱାଧୀନତା' ସ୍ୱପ୍ନର ବିଭବ ॥

ସ୍ୱାଧୀନତା, କଂସପୁରେ
ଦେବକୀ-ନନ୍ଦନ
ସ୍ୱାଧୀନତା ଖୁଦିରାମ-
ରକ୍ତର ଚନ୍ଦନ ॥

ସ୍ୱାଧୀନତା 'ଇରମ'ର
ରକ୍ତଭିଜା ମାଟି
ସ୍ୱାଧୀନତା ଚଟ୍ଟଗ୍ରାମ-
ଅସ୍ତ୍ରାଗାର ଲୁଟି ।

ସ୍ୱାଧୀନତା, ରକ୍ତତୀର୍ଥ
ଜାଲିଆନାବାଗ
ସ୍ୱାଧୀନତା, ଶାନ୍ତିଶିଖା
ମୁକ୍ତିର ବେହାଗ ॥

ଶବ୍ଦଟିଏ 'ସ୍ୱାଧୀନତା'
ଖାଲି ସ୍ୱାଧୀନତା,
ତାହା ପାଇଁ ଯୁଗେ ଯୁଗେ
ସଭ୍ୟତାର ପୃଷ୍ଠାଯାଏ ଖୋଲି,
ଅନ୍ଧକାର ଗର୍ଭିତର
ଇତିହାସ କହେ ପୁଣି କଥା ॥

ଶୋଣିତେ ଶୋଣିତେ ପୁଣି
ସଂଗ୍ରାମର ଆଗ୍ନେୟ ଅକ୍ଷରେ,
ଅଗଣିତ ମୃତ୍ୟୁହୀନ ଶହୀଦର ଲୋହିତ ସ୍ୱାକ୍ଷରେ
ଲେଖା ହୁଏ ଇତିହାସ
ମହାକାଳ ଅମ୍ଳାନ ବକ୍ଷରେ ॥

'ସ୍ୱାଧୀନତା' ଶବ୍ଦଟି ଯେ
କୋଣାର୍କର କାରୁକାର୍ଯ୍ୟ ଠାରୁ
ଆହୁରି ସୁନ୍ଦରତର
ଆହୁରି ଯେ ମନୋରମ, ଗୁରୁ ।

ପୀରାମିଡ଼ ଠାରୁ ସେ ପ୍ରାଚୀନ,
ଏଲୋରା ଓ ଅଜନ୍ତାର ଭିତ୍ତିଚିତ୍ର ଠାରୁ
ବର୍ଣ୍ଣୋଜ୍ଜ୍ୱଳ କାନ୍ତ-କମନୀୟ,
ହିମାଦ୍ରି ଶିଖର ଠାରୁ ତୁଙ୍ଗ ପୁଣି
ବିଶ୍ୱର ବିସ୍ମୟ ॥

ସ୍ୱାଧୀନତା ଉଚ୍ଚ ମେଘାସନ
ସ୍ୱାଧୀନତା ଉଜାଣି ଯମୁନା,
ସ୍ୱାଧୀନତା ବିହଙ୍ଗ-କୂଜନ
ସ୍ୱାଧୀନତା କପୋତୀର ଡେଣା ।

ସ୍ୱାଧୀନତା ପୁରୀ ବଡ଼ଦାଣ୍ଡ
ସ୍ୱାଧୀନତା ପୁଣ୍ୟ ମହୋଦଧି,
ସ୍ୱାଧୀନତା ସୂର୍ଯ୍ୟୋଦୟ ପୁଣି
ସ୍ୱାଧୀନତା କୁଳୁ କୁଳୁ ନଦୀ ।

ସ୍ୱାଧୀନତା ରଙ୍ଗ ଆଉ ତୂଳୀ
ସ୍ୱାଧୀନତା କାଳି ଓ କଲମ,
ସ୍ୱାଧୀନତା ନବବିବାହିତା-
ଶାଢ଼ୀ ଦେହେ ସୂକ୍ଷ୍ମ କୋଟିକାମ ।

ଝରଣାର କାଚକେନ୍ଦୁ ଜଳେ
ସ୍ୱାଧୀନତା ରୂପାକାଣ୍ଠି ମାଛ,
ସ୍ୱାଧୀନତା ଜୀବନ-ନଦୀର
ଦୁଇ କୂଳେ ସ୍ୱପ୍ନର ପାହାଚ ।

ସ୍ୱାଧୀନତା ଚଞ୍ଚଳ ବସନ୍ତ
ମଳୟର ମଧୁର ହିଲ୍ଲୋଳ,
ସ୍ୱାଧୀନତା ନାଳ କଇଁଫୁଲ
ଫଗୁଣର ଆମ୍ବର ବଉଳ ।

ନୃତ୍ୟାଙ୍ଗନା ଚପଳ ଚରଣେ
ସ୍ୱାଧୀନତା ନୂପୁର ନିକ୍ୱଣ,
ସ୍ୱାଧୀନତା ପ୍ରେମିକା ଓଠର
ଥର ଥର ପ୍ରଥମ ଚୁମ୍ବନ ।

ସ୍ୱାଧୀନତା ରଜଦୋଳି ଗୀତ
ସ୍ୱାଧୀନତା ରବୀନ୍ଦ୍ର ସଙ୍ଗୀତ,
ଫଗୁଣର ଫଗୁଖେଳ ପୁଣି
ରାଧିକାର ଆଖିର ଇଙ୍ଗିତ ।

ସ୍ୱାଧୀନତା ଫୁଟା ଜହ୍ନିଫୁଲ
ସ୍ୱାଧୀନତା ସାଦା ଜହ୍ନରାତି,
ଅବୋଧ ଶିଶୁର ଲାଗି
ସ୍ୱାଧୀନତା ଜନମାର ସ୍ତୁତି ।

ସ୍ୱାଧୀନତା ଉଡ଼ନ୍ତା ବେଲୁନ
ବେହେଲାର ଲଳିତ ମୂର୍ଚ୍ଛନା,
ସ୍ୱାଧୀନତା ବହୁରୂପୀ ଖେଳ
ସ୍ୱାଧୀନତା ଅଭଙ୍ଗା ଖେଳଣା

ଦୂରବନ ପାହାଡ଼ୀ ପଲ୍ଲୀରେ
ସ୍ୱାଧୀନତା ଧାଙ୍ଗଡ଼ୀର ଗୀତ,
ସ୍ୱାଧୀନତା ଘଣ୍ଟିଆଳ ସୁର
ମଗୁଣୀର ସୁନା ଧାନକ୍ଷେତ ।

ସ୍ୱାଧୀନତା, ନୟନର ଛରେ
ତରୁଣୀର ଚପଳ ଅପାଙ୍ଗ,
ସ୍ୱାଧୀନତା, ଗାଉଁଲି ବହୂର
ନାକତଳେ ସୁନାର ଲବଙ୍ଗ ।

ସ୍ୱାଧୀନତା କୋଇଲର କୁହୁ
ସ୍ୱାଧୀନତା ମହୁର ସୋରେଇ,
ସ୍ୱାଧୀନତା ମହାନଦୀ ପାଣି
ସ୍ୱାଧୀନତା କାଠଯୋଡ଼ି ନଈ ।

ସ୍ୱାଧୀନତା ଘିନୁଆର ଧନୁ
ବାଞ୍ଛାନିଧି ଗୃରଣ-ସଙ୍ଗୀତ,
ସୁରେନ୍ଦ୍ର ସାଏର ଖଡ୍ଗ
ବର୍ସାମୁଣ୍ଡା ଆଗ୍ନେୟ ଶପଥ ।

ସ୍ୱାଧୀନତା ଦୁର୍ଗ-ବାରବାଟୀ
ବପ୍ଳବର ଖର ଅଗ୍ନିକଣା
ସ୍ୱାଧୀନତା ବକ୍ସି, ପାଟଣାଣୀ,
ରାଜଗୁରୁ ବଦ୍ରୋହ ଘୋଷଣା ।

ସ୍ୱାଧୀନତା 'ଦଲ୍ଲୀ ଚଲୋ' ଡ଼ାକ
ସ୍ୱାଧୀନତା 'ଦାଣ୍ଡି ଅଭଯାନ',
ସ୍ୱାଧୀନତା ଶହୀଦ ମୀନାର
ନେତାଜୀର ଶାଣିତ କୃପାଣ ।

ସ୍ୱାଧୀନତା ନୁହେଁ ଶବ୍ଦଟିଏ
ପ୍ରାଣହୀନ ଶବ୍ଦକୋଷଟିରେ,
ପୃଥିବୀର ଦେଶେ ଦେଶେ
ପରବ୍ୟାପ୍ତ ଜୀବନ-ଗ୍ରନ୍ଥରେ—

ସ୍ୱାଧୀନତା, ଆଦ୍ୟ ଆଉ
ସ୍ୱାଧୀନତା ଶେଷ କଥନିକା,
ପ୍ରାଣଠାରୁ ପ୍ରିୟ ସେ ଯେ
ହୃଦୟଠୁଁ ଆହୁରି ଘନିଷ୍ଠ
ଜୀବନର ବୀଜମନ୍ତ୍ର
ସଂଗ୍ରାମର ଶେଷ ରକ୍ତଟୀକା ॥ □□

# ଭାରତ ଆବିଷ୍କାର

ଭାରତ ହେ ମୋର ଜନନୀ ଭାରତ, ତୋତେ ମୁଁ ଖୋଜୁଛି ଆଜ
ଯୁଗ ଯୁଗ ଧରି ଯେତେ ମୁଁ ଖୋଜୁଛି, ସେତେ ତୁ ଯାଉଛୁ ହଜ ।
ଖୋଜୁଛି ମୁଁ ତୋତେ ହିମାଚଳ ଚୂଳେ
ଭାରତ ସାଗର ଜଳର ଅତଳେ
ରାଜପୁତାନାର ମରୁ-ପ୍ରାନ୍ତରେ,
ତଥାପି ପାଇନ ଖୋଜ,
ଭାରତ ହେ ମୋର ପ୍ରାଣର ଭାରତ, ଖୋଜୁଛି ତୋତେ ମୁଁ ଆଜ ॥

ବହୁଦିନ ତଳେ ଖୋଜିଥିଲି ତୋତେ ସିନ୍ଧୁର ତଟେ ତଟେ
ମହେଞ୍ଜୋଦାରୋ, ହରପ୍ପା କୋଳେ, ଗଙ୍ଗାର ଘାଟେ ଘାଟେ ।
ବ୍ରହ୍ମପୁତ୍ର ନଦୀ ତୀରେ ତୀରେ
କୃଷ୍ଣା-କାବେରୀ-ଗୋଦାବରୀ ନୀରେ
ନୀଳଗିରି ନୀଳ-ଶଇଳର ଶିରେ
ବିନ୍ଧ୍ୟର ଭାଲପଟେ,
ଖୋଜିଥିଲି ତୋତେ ବହୁଦିନ ତଳେ ସିନ୍ଧୁର ତଟେ ତଟେ ॥

ଶୁଣିଥିଲି ତୋର ସ୍ୱର-ଝଙ୍କାର କୋଟି ମଣିଷର ଗାନେ
ଶତ ବିହଗର ମଧୁ କଳରବେ, ଝରଣାର କୁଳୁତାନେ ।
ଶିଶୁ ଓଷ୍ଠର ମଧୁମୟ ଭାଷେ
ତରୁଣୀର ଶୁଭ୍ର ନୟନ ଆଭାସେ
ଗୋପାଙ୍ଗନାର ପ୍ରୀତିଭରି ରାସେ
ଯମୁନାର ନୀପବନେ,
ଶୁଣିଥିଲି ତୋର ମଧୁ ଝଙ୍କାର କୃଷ୍ଣର ବେଣୁ ତାନେ ॥

ଋଷିକଣ୍ଠର ଆଦି ଓଁକାରେ ହୋମ-ଧୂମାନଳେ ମୁହିଁ
ଖୋଜିଥିଲି ତୋତେ ସ୍ୱର୍ଣ୍ଣ-ସକାଳେ ରଶ୍ମିରେ ଅବଗାହି ।
ହିମାଚଳ ଚୂଳ ଧବଳ ତୁଷାରେ
କନ୍ୟାକୁମାରୀ ଅରୁଣ ଉଷାରେ
ଗାଙ୍ଗେୟ ଭୂମି ଶ୍ୟାମଳ ଭୂଷାରେ
ହସୁଥିଲୁ ଯେବେ ତୁହି,
ପାଇଥିଲି ତୋର ପରିଚୟ ଯେବେ ଆଦ୍ୟ ପ୍ରଭାତେ ମୁହିଁ ॥

ମହାଭାରତର କୁରୁସଭା ତଳେ ପାଞ୍ଚାଳୀ ଆଖି ଜଳେ
ଆଗାମୀ ଦିନର ସମର ବହ୍ନି ଜଳୁଥିଲା ଯେତେବେଳେ,
ସେତେବେଳେ ଥରେ ଖୋଜିଥିଲି ତୋତେ,
ଆଉଥରେ ପୁଣି ପୁଷ୍ପକ ରଥେ—
ଲାଞ୍ଛିତା ସୀତା-ଉଷ୍ଣ ଲୋତକେ
ଅଶ୍ରୁଳ ହାହାକାରେ
ଖୋଜିଥିଲି ତୋତେ ଜନନୀ ଭାରତ, ଖୋଜିଥିଲି ସେତେବେଳେ ॥

ଖୋଜିଛି ମୁଁ ତୋତେ କଂସ କାରାରେ, ରାବଣ ବନ୍ଦୀଶାଳେ
ମହିଷାସୁରର ଅତ୍ୟାଚାରରେ ତ୍ରସ୍ତା ଧରଣୀ କୋଳେ ।
ଦୁର୍ଯ୍ୟୋଧନର ଗଦା ହୁଂକାରେ
ସବ୍ୟସାଚୀର ଧନୁ ଟଙ୍କାରେ
କୁରୁକ୍ଷେତ୍ରର ରଣ ଝଙ୍କାରେ
ଯୁଗେ ଯୁଗେ, କାଳେ କାଳେ,
ଖୋଜିଛି ମୁଁ ଶତ ସିଂହାସନର ଉତ୍ଥାନ-ପତନରେ ॥

ରାଜଗିର ତଳେ ଖୋଜିଥିଲି, ତୋତେ, ମଗଧର ପଥେ ପଥେ
ଅଶୋକର ଶିଳାଲିପିରେ ଲିପିରେ, ଖାରବେଳ ଜୟରଥେ ।
ଧଉଳଗିରିର ରଣ-ପ୍ରାନ୍ତରେ
ଗୋଲକୁଣ୍ଡାର ଦୁର୍ଗ-ଶିବିରେ
ଶତ ଶତ ବୀର ଖର କରବାଳେ
ଝାନ୍ସୀ ଓ ପାନିପଥେ,
ଖୋଜିଛି ମୁଁ ତୋତେ, ହେ ଭାରତ ମୋର ଧାତ୍ର ପଲକପାତେ ॥

ତାଜମହଲର ଶ୍ୱେତ ମର୍ମରେ, ଅଜନ୍ତା-ନଟୀ ଛନ୍ଦେ
କୋଣାରକ କାରୁ ଲଳିତ ବିଳାସେ, ନର୍ତ୍ତକୀ ନୀବିବନ୍ଧେ ;
‘କଥାସରିତ’ର କାହାଣୀ କଳାରେ
‘ମହା ଜାତକ’ର ଗଳ୍ପମାଳାରେ
‘ହିତୋପଦେଶ’ର କଥାରେ କଥାରେ
ଅଦ୍ଭୁତ ମହାନନ୍ଦେ
ଖୋଜୁଛି ମୁଁ ତୋତେ ଯୁଗ ଯୁଗ ଧରି ନବ ରୂପ-ରସ-ଛନ୍ଦେ ॥

ବାଣଭଟ୍ଟର ‘କାଦମ୍ବରୀ’ରେ, କାଳିଦାସ-‘ମେଘଦୂତେ’
‘ଗୀତ ଗୋବିନ୍ଦ’ ଲଳିତ ଛନ୍ଦେ, ଚାରଣ-କବିର ଗୀତେ,
‘ଗୀତାଞ୍ଜଳି’ର ପ୍ରତି ଅକ୍ଷରେ
ଗୁରୁ ତାନ୍‌ସେନ୍ ରାଗ-ଝଙ୍କାରେ
ମୀରା-ଭଜନର ମଧୁର ଲହରେ
କେତେ ଯେ ସନ୍ଧ୍ୟା-ପ୍ରାତେ
ଖୋଜିଅଛି ମୁହିଁ ବ୍ୟାକୁଳ ହୃଦୟେ, ଖୋଜିଅଛି ମୁହିଁ ତୋତେ ॥

କନ୍ଧକାମିନୀ କୁସୁମ-ଜୁଡ଼ାରେ, ବନବାସିନୀର ଗାନେ
ଲୋକସଙ୍ଗୀତ ଲହରେ ଲହରେ ବଂଶୀର ମଧୁତାନେ,
ମାଦଳର ତାଳେ, କେନ୍ଦରା ସୁରେ
ଗ୍ରାମ୍ୟବଧୂର ଚିତା-ମୁରୁଜରେ
ଶତ ଭାଷା, ଶତ ଲିପି-ଅକ୍ଷରେ
ଖୋଜୁଛି ମୁଁ ମନେ ମନେ,
କାଳ କାଳ ଧରି ତୋତେ ଅନୁସରି ଚାଲିଛି ତୋ ସନ୍ଧାନେ ॥

ଶାରଦ ନିଶିରେ, ଶୀତର ଶିଶିରେ, ବୈଶାଖୀ କାଳଝଡ଼େ
ନବ ବସନ୍ତ ବକୁଳ-ମୁକୁଳେ, ଫଗୁଣର ଫଗୁ-ଖେଳେ,
ଆଦ୍ୟ ଆଷାଢ଼ ଧାରା ବାରିପାତେ
ଖୋଜୁଛି ମୁଁ ତୋତେ ରାମଗିରି ପଥେ
ଦେଖିଛି ତୋ ରୂପ ମୁଗ୍ଧ-ଚକିତେ
ସ୍ତବ୍ଧ ନୟନ-ଝରେ,
ଖୋଜିବାକୁ ଯାଇ ହଜି ମୁଁ ଯାଇଛି ତୋହରି ଚରଣ ତଳେ ॥

ତୋତେ ମୁଁ ଖୋଜୁଛି ଜାଲିଆନାବାଗେ, ଖୋଜୁଛି ଚଟ୍ଟଗ୍ରାମେ
ଦାଣ୍ଡିର ପଥେ ଖୋଜୁଅଛି ପୁଣି, ଖୋଜୁଛି ନଗରେ ଗ୍ରାମେ ।
ପଞ୍ଜାବ ବୁକୁ ଲୋହିତ କ୍ଷତରେ
ମନ୍ବନ୍ତରପୀଡ଼ିତ କୃଷକ କ୍ଷେତରେ
ଉଦାସ ବଙ୍ଗାଳ ଭୋକିଲା ପେଟରେ,
ଖୋଜୁଛି ଡ଼ାହାଣେ-ବାମେ
କ୍ଷୁବ୍ଧ ହୃଦୟେ ଖୋଜୁଅଛି ତୋତେ ରାତିର ଶେଷଯାମେ ।।

ଶତ ଶତ ଶତ ଗଣ ଉତ୍ଥାନେ, ଶ୍ରମିକର ପଟୁଆରେ,
ଗରିବ କୃଷୀର ଲଙ୍ଗଳ ମୁନେ, ସଂଗ୍ରାମୀ ହାତଆରେ,
ଧର୍ଷିତା ନାରୀ ନୟନର ଲୁହେ
ବ୍ୟର୍ଥ ମଳିନ ଯୁବକର ମୁହେଁ
ମୃତ୍ୟୁ-ବଣିକ ରଣ ସମାରୋହେ,
ବିଦ୍ରୋହୀ ଚେତନାରେ
ଖୋଜୁଛି ମୁଁ ତୋତେ ସଂଗ୍ରାମୀ ଶତ ମଣିଷର ପଟୁଆରେ ।।

ବହୁ ବିଭେଦର, ବହୁ ବିବାଦର ତୁ ମହାମିଳନ ବିନ୍ଦୁ
ତୋହର ଜଠରେ କଲ୍ଲୋଳ ତୋଳେ ଜୀବନର ମହାସିନ୍ଧୁ ।
ଏକରେ ଅନେକ, ଅନେକରେ ଏକ
ତୋର ଆତ୍ମାର ଚିର-ସନ୍ତକ
ନୟନେ ତୋହର ତମସା-ଆଲୋକ
ଦୀପ୍ତ ଅରୁଣ-ଇନ୍ଦୁ,
ହେ ଭାରତ ମୋର ପ୍ରାଣର ଭାରତ, ତୁ ମହାମିଳନ ବିନ୍ଦୁ ।।

ଖୋଜି ଖୋଜି ତୋତେ କ୍ଳାନ୍ତ ହେଲିଣି, ତଥାପି ଚାଲିଛି ଖୋଜ
ଯୁଗ ଯୁଗ ଧରି ଖୋଜିବାରେ ମୋର ଅନ୍ତ ନାହିଁ ଯେ ଆଜ ।
ବନ୍ଦୀ ହୋଇ ମୁଁ ତୋ ପଣତ ତଳେ
ଶିଶୁଟିଏ ଭଳି କାଳ କାଳ ଖେଳେ
ଖୋଜିବାକୁ ଯାଇ ହଜିଯାଏ ଧୀରେ
ପାରେ ନାହିଁ ତୋତେ ବୁଝି,
ଭାରତ ହେ ମୋର ଜନନୀ ଭାରତ, ତଥାପି ଚାଲିଛି ଖୋଜ ।। ☐☐

# ଯେଉଁଠି ଯୁଦ୍ଧ ହେଉନା କାହିଁକି

ଯେଉଁଠି ଯୁଦ୍ଧ ହେଉନା କାହିଁକି
ପ୍ରତିଟି ଗୋଳାର ଶବ୍ଦ ମୋ ଝରକାରେ ;
ଯେଉଁଠି ଯୁଦ୍ଧ ହେଉନା କାହିଁକି
ପ୍ରତିଟି ବୋମାର ବିସ୍ଫୋରଣ
ମୋ ଆଗଣାରେ,
ଯେଉଁଠି ଯୁଦ୍ଧ ହେଉନା କାହିଁକି
ପ୍ରତିଟି ଆଗ୍ନେୟାସ୍ତ୍ରର ଆଘାତ
ମୋ ହୃଦୟରେ ॥

ଶାନ୍ତିର ମଧୁମୟ ଭାଷା ବୁଝୁଥିବା ମଣିଷଟି
ହଠାତ୍ ତଟସ୍ଥ ହୋଇଯାଏ
ଏବଂ ବୁଝିବାକୁ ଚେଷ୍ଟାକରେ
ନରଘାତୀ ଯୁଦ୍ଧର ଦାନବୀୟ ଭାଷା ;
ଆଉ ସେତେବେଳେ
ଶାନ୍ତ-ସମାହିତ ଆତ୍ମା ମୋର
ଭୟାର୍ତ୍ତ ଆର୍ତ୍ତନାଦରେ ହୋଇଉଠେ କମ୍ପମାନ୍ ॥

ଯୁଦ୍ଧ ଯେଉଁଠି ଲାଗୁନା କାହିଁକି
ଇରାକ ବା ଇରାନ୍‌ରେ,
ପାଲେଷ୍ଟାଇନ ବା ଇସ୍ରାଏଲ୍‌ରେ,
କୁଏତ୍‌ ବା ସାଉଦି ଆରବରେ,
ଜୋର୍ଡାନ୍‌ ବା ସିରିଆରେ
କିମ୍ବା ପୃଥିବୀର ଯେ କୌଣସି
କୋଣେ ଅନୁକୋଣେ,
ସବୁଠି କିନ୍ତୁ ଶୁଣାଯାଏ
ସେହି ଗୋଟିଏ ଶବ୍ଦ
ସେହି ଗୋଟିଏ ଧ୍ୱନି
ଦୁରନ୍ତ ମୃତ୍ୟୁର ଆଉ ପ୍ରଚଣ୍ଡ ଧ୍ୱଂସର
ଏବଂ ଶୁଣାଯାଏ
ସେହି ଗୋଟିଏ ଉଦ୍ଧତ ଅଟ୍ଟହାସ
ଅନ୍ଧ ଅହମିକାର ॥

ମୁଁ ଜାଣେ
ଆଜି କାହାର ସେହି ସର୍ବନାଶୀ-
ଅଦ୍‌ଭୁତ ଖିଆଲରେ
ଜଳି ଯାଉଛି 'ବାସରା'ର ବନ୍ଦର,
ଟଳି ଯାଉଛି 'ବାଗ୍‌ଦାଦ'ର ପ୍ରାସାଦ,
ଝରି ଯାଉଛି ମରୁଦ୍ୟାନର ଖେଜୁର,
ଆଉ ଝରିଯାଉଛି ଲକ୍ଷ ଲକ୍ଷ ନିରୀହର ଅଶ୍ରୁ ।
ଏହା କଣ
ସେହି ଅନ୍ଧ ଅହମିକାରେ ଛନ୍ଦା
ଉନ୍ମତ୍ତ ଶାସକର ?
ନା, ବନ୍ଧ୍ୟା ବିବେକରେ ବନ୍ଧା
ସେହି ସ୍ୱାର୍ଥାନ୍ଧ ବଣିକର ?
ମୁଁ ଜାଣେ,
କାହାର ସେହି ସର୍ବନାଶୀ ବିଚିତ୍ର ଖିଆଲ
ଡାକି ଆଣିଛି ଯୁଦ୍ଧ ;

ଏବଂ ତାହା ମର୍ମେ ମର୍ମେ
ଅନୁଭବ କରେ ବୋଲିତ
ଆଜି କଣ୍ଠରେ ମୋର
ପ୍ରତିବାଦର ଶବ୍ଦ ॥

ଯୁଦ୍ଧର ନିଆଁ ଯେଉଁଠି ଜଳୁନାହିଁ କାହିଁକି
ତାର ଆଗ୍ନେୟ ଉତ୍ତାପରେ
ମଉଳି ଯାଉଛି
ମୋ ବଗିଚାର ଶିଶିରଭିଜା ରଜନୀଗନ୍ଧା ;

ଯୁଦ୍ଧର ନିଆଁ ଯେଉଁଠି ଜଳୁନା କାହିଁକି
ତାର ଉତ୍ତପ୍ତ ତେଜରେ
ଝାଉଁଳି ଯାଉଛି
ମୋ ଆମ୍ବତୋଟାର ମିଠା ମିଠା କଅଁଳ-ବଉଳ ;

ଯୁଦ୍ଧର ନିଆଁ ଯେଉଁଠି ଜଳୁନା କାହିଁକି
ତାର ବିଷବାଷ୍ପରେ କୁହୁଳି ଯାଉଛି
ମୋର ସବୁଜ ପଲ୍ଲୀର
ନୀଳ-ନିର୍ମଳ ପ୍ରଶାନ୍ତ ଆକାଶ ॥

ମୁଁ ବୁଝିପାରେନା
କି ଭୁଲ କରିଛି ସେହି
ମାତୃହରା ଅସହାୟ ଅବୋଧ ଶିଶୁଟି,
ଯିଏ ଏକାନ୍ତରେ ବସି ବସି
ବିକଳେ ଚିତ୍କାର କରେ
ବାଗ୍‌ଦାଦର ଧ୍ୱଂସ-ସ୍ତୂପ ତଳେ ।

ମୁଁ ବୁଝିପାରେନା
କି ଭୁଲ କରିଛି ସେହି
ସନ୍ତାନହରା ବ୍ୟାକୁଳ-ଜନନୀ,
ଯିଏ, 'ଇରାକ୍'ର ରାଜପଥେ
ଢାଳେ ଆଜି ଅବାରିତ ଉଦ୍‌ବେଳିତ ଅଶ୍ରୁ ।

ମୁଁ ବୁଝିପାରେନା
କି ଭୁଲ କରନ୍ତି ସେହି
ଅରୁଣବର୍ଣ୍ଣା ତରୁଣୀ ପ୍ରେମିକା
ଯାହାର ତରୁଣ ପ୍ରେମିକ କରେ
ଇରାକର ଆକାଶରେ କରୁଣ ଅଗ୍ନିସ୍ନାନ,

ଏବଂ ମୁଁ ପାରେନା ବୁଝି
କି ଭୁଲ କରନ୍ତି ସେହି
ନଭଚୁମ୍ବୀ ସମୁଦ୍ର-ସାରସ
ପାରସ୍ୟ-ସାଗର-ଜଳେ
ଆଜ ଯା'ର ତୈଳସିକ୍ତ
ମୃତ-ଦେହ ଭାସେ !!

ଯେଉଁଠି ଯୁଦ୍ଧ ଲଗୁନା କାହିଁକି
ମୋର ଉନ୍ନତ କପୋଳରେ
ତାର ଆଗ୍ନେୟ ହାତର ସ୍ପର୍ଶ ;

ଯେଉଁଠି ଯୁଦ୍ଧ ଲଗୁନା କାହିଁକି
ମୋର ଆରକ୍ତ ଚିବୁକରେ
ତା'ର ଆଣବିକ ହସର ଦଂଶନ ;

ଯେଉଁଠି ଯୁଦ୍ଧ ଲଗୁନା କାହିଁକି
ମୋର ପ୍ରତିଟି ନିଃଶ୍ୱାସରେ
ତା'ର ବିଷବାଷ୍ପର ଚୁମ୍ବନ ।

ତେଣୁ ମୋ ପାଖରେ
ଯୁଦ୍ଧର ଗୋଟିଏ ମାତ୍ର ଅର୍ଥ :
ଦାନବୀୟ ଉଲ୍ଲାସରେ
ନିର୍ବିଘ୍ନର ହତ୍ୟା ;

ଯୁଦ୍ଧର ଗୋଟିଏ ମାତ୍ର ପରିଭାଷା :
ଆସୁରିକ ଉଲ୍ଲାସରେ
ନିର୍ବିକାର ଧ୍ୱଂସ ;
ଏବଂ ଯୁଦ୍ଧର ଗୋଟିଏ ମାତ୍ର ସଂଜ୍ଞା :
ପାଶବିକ ପେଶୀ ତଳେ
ମାନବିକତାର ନିର୍ମମ ନିଧନ ।।

ସେଇଥିପାଇଁ ତ
ଯେଉଁଠି ଯୁଦ୍ଧ ହେଉନା କାହିଁକି
ପ୍ରତିଟି କମାଣର ଉଦ୍ଧତ ଆଓ୍ୱାଜ
ବାଜେ ଆସି
ମୋର ପ୍ରତିଟି ସ୍ନାୟୁକୋଷରେ ।

ଯେଉଁଠି ଯୁଦ୍ଧ ହେଉନା କାହିଁକି
ପ୍ରତିଟି ରକ୍ତର ଛିଟା
ଲାଗେ ଆସି
ମୋର ପ୍ରତିଟି ଅବୟବରେ ।

ଯେଉଁଠି ଯୁଦ୍ଧ ହେଉନା କାହିଁକି
ପ୍ରତିଟି ଆହତର ଆକୁଳ ଆର୍ତ୍ତନାଦ
ଶୁଭେ ଆସି
ଏଇ ମୋର ହୃଦୟର
ନିଭୃତ କକ୍ଷରେ ।। □□

# ବିଦଗ୍ଧ ବୈଶାଖ : ୧୯୮୯

ଗ୍ରୀଷ୍ମର ଖର ଦହନେ ଜଳୁଛି ଧରା
ଜଳୁଛି ଆକାଶ, ଜଳୁଛି ଦିଗ୍‌ବଳୟ,
ଜଳେ ଜନପଦ, ଜଳେ ପ୍ରାନ୍ତର-ମରୁ
ଦିଗ୍‌ବିଦିଗରେ ରୁଦ୍ର ଦହନ-ଭୟ ॥

ସୂର୍ଯ୍ୟର ଖର ରଶ୍ମିର ଶର ଛୁଟେ
ପିଙ୍ଗଳ ଆଜି ଶ୍ୟାମଳ ବନସ୍ପତି,
ଶୁଷ୍କ-ନୀରସ ତଟିନୀର ମଧୁଧାରା
ଶ୍ରାନ୍ତ-କ୍ଲାନ୍ତ ଜୀବନର ପ୍ରଜାପତି ॥

ଦହନ ଦହନ, ରୁଦ୍ର ଦହନ ଏଥେ
ଦଗ୍ଧ ଜୀବନ, ଦଗ୍ଧ ହୃଦୟ ମନ,
କାହିଁ ଶୀତଳତା, ଶ୍ୟାମଳତା କାହିଁ କହ ?
ବୈଶାଖୀ ଝଡ଼େ ଲୁଣ୍ଠିତ ମଧୁବନ ॥

ରୁଦ୍ର ଦହନେ, ଉଗ୍ର ଦହନେ ଆଜି
ବ୍ୟସ୍ତ-ବିକଳ ଶ୍ୟାମଳ ପ୍ରାଣର ତରୁ,
ଦିଗନ୍ତେ ଉଡ଼େ ଧୂସର ଧୂଳିର ଧୂଆଁ
ସମ୍ମୁଖେ ନାଚେ ଦଗ୍ଧ ସାହାରା-ମରୁ ॥

ବହ୍ନି-ବଳୟେ ଧ୍ୱଂସର ଗୃହିଲେ ପୂଜା
ଶ୍ୟାମଳ ଶୀତଳ ଖାଣ୍ଡବବନ ଜଳେ,
ବଙ୍ଗ ସାଗର ଊର୍ମ୍ମିର ତାଳେ ତାଳେ
'ଅଗ୍ନି-ବଳୟେ' ରକ୍ଷା-କବଚ ଝଲେ ॥

ମାନବିକତାର ପତାକାକୁ ପଦେ ଦଳି
ନିର୍ଲ୍ଲଜ ଯେତେ ଗର୍ବେ ଫୁଲାଏ ଛାତି,
କଣ୍ଠେ ଝୁଲାଇ ଶାସ୍ତ୍ରର ଜପାମାଳୀ
ମୃତ୍ୟୁର ଦୂତ ଡାକଆଣେ ନୀଳରାତି ॥

ଇନ୍ଦ୍ରପ୍ରସ୍ଥେ ଶକୁନିର ପଶା ଗଡ଼େ
ସିଂହାସନରେ ଶକୁନ ଝାଡ଼ୁଛି ଡେଣା,
ଶାନ୍ତ ଆକାଶେ ଝଡ଼ର ଈଗଲ ଉଡ଼େ
ମାଟିରେ ଲୋଟୁଛି କାନ୍ତ ଜୀବନ-ବୀଣା ॥

ରଣ-ଦାନବର ଅଶୁଭ ଅଟ୍ଟହାସେ
ଶଙ୍କିତ ଆଜ ଗଣଦେବତାର ହସ,
କ୍ଷମତାର ଗିରି-ଶୃଙ୍ଗର ଶିରେ ବସି
ଶୃଙ୍ଗାର ରଚେ ସ୍ୱାର୍ଥର କ୍ରୀତଦାସ ॥

କାହିଁ ବନ୍ଧୁତା, ସହମର୍ମ୍ମିତା କହ
କାହିଁ ବା ଶୁଦ୍ଧ ସମବେଦନାର 'ଆହା' ?
ମର୍ମେ ମର୍ମେ ଧୂମ୍ରାଭ ନିଆଁ ଜଳେ
ଗୁପ୍ତ ଛୁରିକା ବିଦ୍ଧ କରୁଛି ହିଆ ॥

ମାଟିର ଗର୍ଭେ ଫସିଲ୍ ପଶୟେ କାହିଁ
ସହୃଦୟତାର ସୁହୃଦ୍ ରହିଚ ଲୁଚି ?
ଏତେବେଳେ ଟିକେ ଉତ୍ତୋଳ ନିଜ ମଥା
ଉଚ୍ଛଳ କର ମମତାର ମଧୁ-ଝର ॥

ରୁଦ୍ରର ନୁହେଁ, ଶ୍ୟାମ ବନ୍ଦନା ଗାନେ
ସ୍ପନ୍ଦିତ କର, ନନ୍ଦିତ କର ପ୍ରାଣ,
ଗୁରୁ ଚନ୍ଦନେ ଚର୍ଚ୍ଚିତ ହେଉ ତନୁ
ଅର୍ଚ୍ଚିତ ହେଉ ମୂର୍ଚ୍ଛିତ ଶ୍ୟାମଘନ ॥

ଦହନ, ଦହନ, ତୀବ୍ର ଦହନ ଏ ଯେ
ଝଗେ ଝଗେ ବୁଣ ଶୀତଳ-ସୀକରକଣା
ଆଉ ନୁହେଁ ନୁହେଁ ରୁଦ୍ରର ତାଣ୍ଡବ
ଶାନ୍ତର ସୁରେ ବଜାଅ ସୃଷ୍ଟି-ବୀଣା ॥ □□

# ମୋର ବୁଜିଦିଅ ଦୁଇ ଆଖି

କାନ୍ତ କୋମଳ ମୁଲାଏମ୍ ତୁମ ସ୍ନିଗ୍ଧ ପାପୁଲି ମେଲି
ବୁଜିଦିଅ ତୁମେ ବୁଜିଦିଅ ଆଜି ଏ ମୋର ଦୁଇଟି ଆଖି
ଆଉ ମୁଁ ପାରୁନି ପ୍ରିୟତମା ମୋର ଆଉ ମୁଁ ପାରୁନି ଦେଖି
ରକ୍ତର ଖେଳ, ମୃତ୍ୟୁର ଲୀଳା, ହତ୍ୟାର ବର୍ଷିକା
ଦିଗ୍‌ବଧୂ-ଗୁରୁ-ରକ୍ତ କପୋଳ ପଡ଼ିଆସିଲାଣି ଫିକା
ପରମାଣୁ ରଣ-ଈଗଲ ଝାଡ଼ୁଛି ପକ୍ଷ ଯେ ବେଗେ ବେଗେ
ବିଷ-ବାଷ୍ପରେ ଭରୁଛି ଆକାଶ, ଜଳୁଛି ପଦ୍ମବନ
ଧରଣୀର ନାଭିକେନ୍ଦ୍ର ଥରାଇ ଉଠେ ଉଦ୍‌ଜାନ ଧୂଆଁ
ମଣିଷ ମନର ଶାନ୍ତ-ସବୁଜ-ଶସ୍ୟ କେଦାରେ ଆଜି
କୁହୁଳି କୁହୁଳି ହଠାତ୍ ଜଳୁଛି ଅବିଶ୍ୱାସର ନିଆଁ ॥

ଆଉ ମୁଁ ପାରୁନି ପ୍ରିୟତମା ମୋର, ଆଉ ମୁଁ ପାରୁନି ଦେଖି
ବୁଜିଦିଅ ତୁମେ, ବୁଜିଦିଅ ଆଜି, ଏ ମୋର ଦୁଇଟି ଆଖି,
ଭରିଦିଅ ତହିଁ ସାରା ଜଗତର ନିବିଡ଼ ଅନ୍ଧକାର
ଟାଣିଦିଅ ତୁମେ ଟାଣିଦିଅ ଘନ ତିମିରର ଯବନିକା
ନଇଁ ଆସୁ ତହିଁ ଶାନ୍ତ ଶୀତଳ ମୌନ-ନିର୍ଜନ ରାତି
ସହିହେଉ ନାହିଁ ରୁଦ୍ର-ପ୍ରଖର ରଶ୍ମିର ଶରାଘାତ
ରଣ-ରକ୍ତିମ ଆଲୋକର ଶିଖା ବର୍ଚ୍ଛା ମାରୁଛି ସାଥି !!

ପଥେ ପଥେ ଏ କି ହତ୍ୟାର ଲୀଳା, ରକ୍ତର ବିଭୀଷିକା
ଏ କି ମୃତ୍ୟୁର କାଳ-ସଙ୍ଗୀତ, ଧ୍ୱଂସର ନବସୃଜନା
ଏ କି ନିର୍ମମ ପାଶବିକତାର କୁଟିଳ ଅଟ୍ଟହାସ
ବିଂଶ ଶତକେ ଯଦୁବଂଶର ଏ କି ପ୍ରମତ୍ତ ରାସ,
ଦିଗେ ଦିଗେ ଏ କି ରଣ-ଦୁନ୍ଦୁଭି, ଜଣ-ବନ୍ଦନା ଗୀତି
କ୍ରନ୍ଦନରୋଳେ କମ୍ପିତ ଧରା, ଗଣହତ୍ୟାର ଖ୍ୟାତି
ଏ କି ଆରଣ୍ୟ ବର୍ବରତାର ନିନ୍ଦିତ ଅଭିଷେକ
ଅବିଶ୍ୱାସର ନିଃଶ୍ୱାସେ ଏ କି ତ୍ରସ୍ତ ଜୀବନାଲୋକ
ଐକ୍ୟର ନାମେ ଏ କି ଅଦ୍ଭୁତ ଶତ ବିଭେଦର ବାଧା
ଧର୍ମର ନାମେ ଏ କି ଉଗ୍ରତା, ଏ କି ଛଦ୍ମତା-ମାୟା
ସହଜ-ସରଳ-ଶାନ୍ତ ମଣିଷ କୁଟିଳ-ବନ୍ଧନୀରେ
ବନ୍ଦୀ ହୋଇ ଯେ ଛନ୍ଦିଯାଇଛି, ଆଉ ତ ପାରୁନି ଉଠି
ମାରଣାସ୍ତ୍ରରେ ଧ୍ୱସ୍ତ ଆଜିର ସୃଷ୍ଟିର ପରିପାଟି
ବୁଜିଦିଅ ତେଣୁ ବୁଜିଦିଅ ପ୍ରିୟା ଏ ମୋର ଦୁଇଟି ଆଖି
ହିଂସା-ଲୋଲୁପୀ ପୃଥିବୀର ଛବି ଆଉ ମୁଁ ପାରୁନି ଦେଖି ।।

ମୁଁ କି ଆସିଥିଲି ଦେଖିବାକୁ ଏଥି ଆକୁଳ ଅଶ୍ରୁପାତ
ମୁଁ କି ଆସିଥିଲି ଶୁଣିବାକୁ ଏଥି ବ୍ୟାକୁଳ ମର୍ମଗୀତି
ମୁଁ କି ଆସିଥିଲି ପ୍ରାଣ-ସଙ୍କୁଳ ଶଂକିତ ଧରିତଳେ
ବନ୍ଦୀ ହେବାକୁ ରଣ-ଉନ୍ମାଦ-ଶକ୍ତିର ମାୟାଜାଲେ ?

ମୁଁ କି ଆସିଥିଲି କ୍ଷମତାଲିପ୍ସୁ ଶାସକର ଇଂଗିତେ
ସଙ୍ଗୀତ ଗାଇ ଗୃଠୁକାର ଭଳି ନାଚିବାକୁ ଥେଇ ଥେଇ
ମୁଁ କି ଆସିଥିଲି ସହିବାକୁ ଏଥି ଆତ୍ମାର ଅପମାନ
ସ୍ୱପ୍ନକୁ ଜାଳି ସ୍ୱାର୍ଥର ମହା-ସଙ୍କର ହୁତାଶନେ
ଦେବା ପାଇଁ ମୋର ବିବେକକୁ ବଳି ଅର୍ଥର ଦରବାରେ ?

ସବୁ ଆଶା ମୋର ଲୁଣ୍ଠିତ ଆଜି, ଆଉ ମୁଁ ପାରୁନି ଦେଖି
ବୁଜିଦିଅ ପ୍ରିୟା ବୁଜିଦିଅ ତୁମେ ଏ ମୋର ଦୁଇଟି ଆଖି ।।

ଯଦି କେବେ ଦିନେ ଶୁଭସୂର୍ଯ୍ୟର ହୋଇବ ଅଭ୍ୟୁଦୟ
ନୀଳନଭ ତଳେ ଶାନ୍ତିର ଶ୍ୱେତ ପାରାବତ ଯିବେ ଉଡ଼ି
ନବଜାତକର କାନ୍ତ କୋମଳ ନିଷ୍ପାପ ପକ୍ଷ୍ମ ତଳେ
ସ୍ୱପ୍ନର ଶତ ନବମଲ୍ଲିକା ହସି ହସି ଯିବେ ଫୁଟି,
ଜୀବନ-ବେପାରୀ ମୃତ୍ୟୁ-ବଣିକ ହାତରୁ ଖଡ୍‌ଗ ଖସି
ଧରଣୀ ବକ୍ଷୁ ଅବସାନ ହେବ ଗଣହତ୍ୟାର ଲୀଳା!
ତୁଟିବ ମନରୁ ବିଷବାଷ୍ପ ଓ ମାରଣାସ୍ତ୍ରର ଭୟ
ବୁଦ୍ଧିର କୂଟ କପଟପାଶରୁ ମଣିଷ ହୋଇବ ମୁକ୍ତ
ଅଭିଷେକ ହେବ ମାନବିକତାର ହୃଦୟ-ସିଂହାସନେ
ନବଜୀବନର ରକ୍ତକମଳ ସ୍ୱପ୍ନର ସରୋବରେ
ଫୁଟିଦେବ ଯେବେ ଦିଗ୍‌ବଧୂ ଭାଲେ ନୂତନ ବର୍ଣ୍ଣବିଭା
ସେତେବେଳେ ତୁମେ ଖୋଲିଦେବ ମୋର ମୁଗ୍‌ଧ ଦୁଇଟି ଆଖି
ହିଂସା-ପୀଡ଼ିତ ପୃଥିବୀର ଛବି ଆଉ ମୁଁ ପାରୁନି ଦେଖି ॥ □□

# ରକ୍ତ ଝରୁଛି

ରକ୍ତ ଝରୁଛି ନୟନରୁ ଦେଖ
ରକ୍ତ ଝରୁଛି ହୃଦୟରୁ,
ରକ୍ତ ଝରୁଛି ଅବିରତ ପୁଣି
ଅଭିଶପ୍ତ ଏ ସମୟରୁ ।।

ରକ୍ତ ଝରୁଛି ସହରେ ନଗରେ
ଶାନ୍ତ ଶୀତଳ ପଲ୍ଲୀରେ,
ରକ୍ତ ଝରୁଛି ଝେଲମ୍‌ର ଘାଟରେ
ରକ୍ତ ଝରୁଛି ଦିଲ୍ଲୀରେ ।।

କାଶ୍ମୀର ଗୃରୁ ଉପତ୍ୟକାରେ
ଆସାମର ଘନ ଜଙ୍ଗଲେ,
ରକ୍ତ ଝରୁଛି, ରକ୍ତ ଝରୁଛି
କହ କେଉଁ ଜନ-ମଙ୍ଗଳେ ??

ରକ୍ତ ଝରିଛି ବହୁଦିନ ତଳେ
ଫରାସୀର ଗଣ-ବିପ୍ଳବେ
ଋଷିଆ ଦେଶର କୋଟି ଜନତାର
ମହାକ୍ରାନ୍ତିର ଗୌରବେ ।।

ମୁକ୍ତିର ପାଇଁ ରକ୍ତ ଝରିଚ
ଆଫ୍ରିକା ବନ-ପ୍ରାନ୍ତରେ
ସ୍ୱାଧୀନତା ରସେ ସିକ୍ତ ଏ ଦେଶ
ପ୍ରତିଟି ମଣିଷ ଅନ୍ତରେ ॥

ମହାଭାରତର କୁରୁକ୍ଷେତ୍ରରେ
ଦେଇ ଧର୍ମର ଇଙ୍ଗିତ
ରକ୍ତ ଝରିଚ କାଳେ କାଳେ ଗାଇ
ସତ୍ୟର ମହା-ସଙ୍ଗୀତ ॥

କିନ୍ତୁ ଆଜ ଏ ରକ୍ତ ଝରୁଚ
କାହା ପାଇଁ କେଉଁ ସ୍ୱାର୍ଥରେ
କୁହ କେଉଁ ଗୂଢ଼ ଅର୍ଥରେ ?

ରକ୍ତ ଝରୁଚି, ରକ୍ତ ଝରୁଚ
ରାଜପଥେ ଜନ-ବସ୍ତିରେ
ରକ୍ତର ସ୍ରୋତେ ଭକ୍ତ ବଜାଅ
ବଂଶୀ କି ନର ଅସ୍ଥିରେ ??

ଝରଝର ଯେଉଁ ଶୋଣିତେ ସିକ୍ତ
କରୁଛ ଶାନ୍ତ ପୃଥ୍ୱୀକି
ଗଢ଼ିକି ପାରିବ ଜୀବନ୍ତ ସେହି
ରକ୍ତର ମହା ମୂର୍ତ୍ତିକି ??

କେଉଁ ପାଞ୍ଚାଳୀ ବେଣୀବନ୍ଧନ
କରିବ ଶୋଣିତ-ଭକ୍ତ ହେ
ଲକ୍ଷ ନଶ୍ୱହା ଯାଜ୍ଞସେନୀର
ଅଶ୍ରୁରେ ଧରା ସିକ୍ତ ହେ ॥

ଯେଉଁ ରକ୍ତରେ ବନ୍ଧ୍ୟା ଧରଣୀ
ପାଲଟେ ସୁଫଳା-ଉର୍ବର
ଯେଉଁ ରକ୍ତରେ ରୁଦ୍ରାଣୀ ହୁଏ
ଶକ୍ତ-ଶାନ୍ତ-ନର୍ତ୍ତର ॥

ଯେଉଁ ରକ୍ତରେ ଜୀବନ-ସୂର୍ଯ୍ୟ
ନତ୍ୟ ଉଠଇ ଉଦ୍ଭାସି
ତୁମେକ ଝରଅ ସେହି ରକ୍ତ ହେ
ମୃତ୍ୟୁର ଚିର ପ୍ରତ୍ୟାଶୀ ??

ତୁମ ପାଇଁ ଝରେ ଲକ୍ଷ ନୟନୁ
ଧାର ଧାର ଲୁହ ଦୁର୍ବାର
ଲକ୍ଷ ଜୀବନ ତୁମ ପାଇଁ ପୁଣି
ଦୁର୍ବହ ଆଜ ଦୁର୍ଭର ॥

ଧ୍ୱଂସର ଦୂତ ସୃଷ୍ଟିର ଚେଣ୍ଣୁ
ଦେବ କେଉଁ ନୂଆ ବାର୍ତ୍ତା ହେ
ହାତରେ ତୁମର କଳଙ୍କ ମସୀ
ହେବ କାହୁଁ ତ୍ରାଣକର୍ତ୍ତା ହେ !!

ଛିନ୍ନ କରହେ ଗୁପ୍ତଘାତକ
ଅନ୍ଧ ଆଖିର ବନ୍ଧନ
କାନଡ଼େର ଶୁଣ ପଲ୍ଲୀ-ନଗରେ
କୋଟି ନଷ୍ଟହର କ୍ରନ୍ଦନ
ଜାଳନା ଜାଳନା ଦଗ୍ଧ ହୃଦୟେ
ପ୍ରତିହିଂସାର ଇନ୍ଧନ ॥

## ହେ ମହାଜୀବନ ! ୧୦୭

ପଥ-ଭୁଲା ଯେତେ ଭ୍ରାନ୍ତ ହେ !
ରକ୍ତରେ ଆଜ ସିକ୍ତ ଧରାକୁ
କର ତୁମେ ଚିର ଶାନ୍ତ ହେ !
ଆର୍ତ୍ତି ଆକୁଳ ଆଖିଜଳେ ଭଜା
ଜୀବନକୁ କର କାନ୍ତ ହେ !!

ରକ୍ତ ଝରିଛି, ରକ୍ତ ଝରୁଛି
ରକ୍ତର ଗୂଢ଼ ଅର୍ଥକୁ
ବୁଝିବାକୁ ଥରେ ଚେଷ୍ଟା କର ହେ
ଭୁଲି ଆପଣାର ସ୍ୱାର୍ଥକୁ
ଅନୁଭବ କରି ସତ୍ୟକୁ
ବ୍ୟର୍ଥ କରନା ତାରୁଣ୍ୟଭରା
ଜୀବନର ପରମାର୍ଥକୁ ॥ □□

# ସୃଷ୍ଟି–ସୂଚନା

୧. ଓଃ ॥

ରଚନାକାଳ : ସେପ୍ଟେମ୍ବର ୧୯୮୦
ପ୍ରକାଶିତ : ଇସ୍ତାହାର-୧୨, ଶାରଦୀୟ ବିଶେଷାଙ୍କ-୧୯୮୦

୨. କୁକୁଡ଼ା ॥

ରଚନାକାଳ : ଅକ୍ଟୋବର ୧୯୮୩
ପ୍ରକାଶିତ : ଧରିତ୍ରୀ, ଦଶମ ଜନ୍ମବାର୍ଷିକୀ ବିଶେଷାଙ୍କ-୧୯୮୩
ଗଳ୍ପଗଜ, ଫେବୃୟାରୀ ମାର୍ଚ୍ଚ-୧୯୮୬

୩. ବାଘ ॥

ରଚନାକାଳ : ଫେବୃୟାରୀ-୧୯୮୪
ପ୍ରକାଶିତ : ଜୀବନ ରଙ୍ଗ, ୧୮ଶ ବର୍ଷ, ଏପ୍ରିଲ୍-ମେ-୧୯୮୪

୪. ବାସ୍ନାଚଢ଼େଇ ॥

ରଚନାକାଳ : ୨-୮-୯୦
ପ୍ରକାଶିତ : ନବଲିପି, ଶାରଦୀୟ ବିଶେଷାଙ୍କ-୧୯୯୦

୫. ମଣିଷ ॥

ରଚନାକାଳ : ସେପ୍ଟେମ୍ବର ୧୯୮୨
ପ୍ରକାଶିତ : ପ୍ରତିବେଶୀ, ଶାରଦୀୟା ସଂଖ୍ୟା-୧୯୮୫

୬. ହାତ ॥

ରଚନାକାଳ : ସେପ୍ଟେମ୍ବର ୧୯୮୧
ପ୍ରକାଶିତ : ଧରିତ୍ରୀ, ଅଷ୍ଟମ ଜନ୍ମ-ବାର୍ଷିକୀ ବିଶେଷାଙ୍କ-୧୯୮୧

୭. ମା' ମୋର ! ॥

ରଚନାକାଳ : ସେପ୍ଟେମ୍ବର ୧୯୮୨
ପ୍ରକାଶିତ : ପାଞ୍ଚଜନ୍ୟ, ଶାରଦୀୟ ବିଶେଷାଙ୍କ-୧୯୮୨

୮. କ୍ୟାଲେଣ୍ଡରର ଶିଶୁ ॥

ରଚନାକାଳ : ଅଗଷ୍ଟ ୧୯୮୦
ପ୍ରକାଶିତ : ଝଙ୍କାର, ୩୨ଶ ବର୍ଷ, ଶାରଦୀୟ ବିଶେଷାଙ୍କ-୧୯୮୦

୯. ଯେଉଁଠି ଛୁଇଁଲେ ହାତ ॥

ରଚନାକାଳ : ସେପ୍ଟେମ୍ବର-୧୯୮୫

ପ୍ରକାଶିତ : ସମାବେଶ, ଶାରଦୀୟ ବିଶେଷାଙ୍କ-୧୯୮୫

୧୦. ଭିଡ଼ ॥

ରଚନାକାଳ : ୩୧-୩-୧୯୮୦

ପ୍ରକାଶିତ : ଜୀବନରଙ୍ଗ

କଟକ ଆକାଶବାଣୀରେ ପ୍ରସାରିତ

୧୧. ଅକାଳ ସକାଳ ॥

ରଚନାକାଳ : ସେପ୍ଟେମ୍ବର ୧୯୮୪

ପ୍ରକାଶିତ : ଇସ୍ତାହାର-୨୮, ଶାରଦୀୟ ବିଶେଷାଙ୍କ-୧୯୮୪

୧୨. ସହର ଛକର କୃଷ୍ଣଚୂଡ଼ା ॥

ରଚନାକାଳ : ଅଗଷ୍ଟ ୧୯୮୨

ପ୍ରକାଶିତ : ଅଭିଯାତ୍ରୀ, ୩ୟ ବର୍ଷ ୩ୟ ସଂଖ୍ୟା ୧୯୮୨

ସମାବେଶ, ଶାରଦୀୟ ବିଶେଷାଙ୍କ-୧୯୯୦

୧୩. ଯଦି ବଞ୍ଚିବାକୁ ଚାହଁ ॥

ରଚନାକାଳ : ସେପ୍ଟେମ୍ବର-୧୯୮୦

ପ୍ରକାଶିତ : ଆସନ୍ତାକାଲି, ପୂଜା ସଂଖ୍ୟା-୧୯୮୦

୧୪. ଭିନ୍ନ ସମୟ : ଭିନ୍ନ ଦୃଷ୍ଟି ॥

ରଚନାକାଳ : ସେପ୍ଟେମ୍ବର-୧୯୮୨

ପ୍ରକାଶିତ : ସମାବେଶ, ଶାରଦୀୟା ସଂଖ୍ୟା-୧୯୮୨

୧୫. ଗୋଟିଏ ବନ୍ୟାର ଦୃଶ୍ୟ ॥

ରଚନାକାଳ : ସେପ୍ଟେମ୍ବର ୧୯୮୨

ପ୍ରକାଶିତ : ଇସ୍ତାହାର-୨୦, ଶାରଦୀୟ ବିଶେଷାଙ୍କ-୧୯୮୨

୧୬. ତୁମେକି ଦେଖିଚ ତାକୁ ? ॥

ରଚନାକାଳ : ୩୧-୭-୮୮

ପ୍ରକାଶିତ : ଝଙ୍କାର, ଶାରଦୀୟ ବିଶେଷାଙ୍କ ୧୯୮୮

ସୂଚନା : କଟକ ଶହୀଦଭବନରେ ଦୂରଦର୍ଶନ, କଟକ ପକ୍ଷରୁ ୯-୮-୮୮ ତାରିଖରେ ସ୍ୱାଧୀନତା ପ୍ରାପ୍ତିର ୪୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଆୟୋଜିତ କବି ସମ୍ମିଳନୀରେ ପଠିତ ଓ "ମୁକ୍ତ ଶତଦଳ" କାର୍ଯ୍ୟକ୍ରମରେ ବିଭିନ୍ନ କେନ୍ଦ୍ରରୁ ପ୍ରସାରିତ ।

**୧୭. ଟିକି ଝିଅଟିର ଦୁଃଖ ॥**

ରଚନାକାଳ : ଡିସେମ୍ବର ୧୯୯୦

ପ୍ରକାଶିତ : ବାଳିକା ( ଶିଶୁକନ୍ୟା ବର୍ଷ ଉପଲକ୍ଷେ 'ଲୋକଶକ୍ତି' ବାଲେଶ୍ୱର ପକ୍ଷରୁ ପ୍ରକାଶିତ ସ୍ମରଣିକା-୧୯୯୦ ) ସୁଚରିତା, ଲେଖକ ବିଶେଷାଙ୍କ-୧୯୯୧

**୧୮. ଆଗନ୍ତୁକ ॥**

ରଚନାକାଳ : ମାର୍ଚ ୧୯୮୮

ପ୍ରକାଶିତ : ଝଙ୍କାର, ୪୦ଶ ବର୍ଷ-ବିଷୁବ ସଂଖ୍ୟା-୧୯୮୮

ସୂଚନା : ଝଙ୍କାର, ୩୯ଶ ବର୍ଷ ୧୧ଶ ସଂଖ୍ୟାରେ ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ "କେମିତି ଆସିବେ ସିଏ ?" କବିତା ପଢ଼ିବା ପରେ ରଚିତ ଓ "ଯେମିତି ଆସନ୍ତୁ ସିଏ, ଚିନ୍ତା ନାହିଁ" ଶିରୋନାମାରେ ପ୍ରକାଶିତ।

**୧୯. ବାମନାବତାର ॥**

ରଚନାକାଳ : ଜାନୁଆରୀ ୧୯୮୪

ପ୍ରକାଶିତ : ପ୍ରତିବେଶୀ, ୨ୟ ବର୍ଷ ୧ମ ସଂଖ୍ୟା-ଜୁଲାଇ ୧୯୮୪

**୨୦. ଅରୁନ୍ଧତୀ ॥**

ରଚନାକାଳ : ୧୫-୭-୮୮

ପ୍ରକାଶିତ : ଇସ୍ତାହାର ୪୩-୪୪ ? ଶାରଦୀୟ ସଂଖ୍ୟା-୧୯୮୮

**୨୧. ସ୍କୁଟର ॥**

ରଚନାକାଳ : ୨-୮-୯୦

**୨୨. ଅମରତ୍ୱ ॥**

ରଚନାକାଳ : ୭-୧୧-୧୯୮୪

ପ୍ରକାଶିତ : ପ୍ରତିବେଶୀ, ୨ୟ ବର୍ଷ ୩ୟ ସଂଖ୍ୟା, ଜାନୁଆରୀ-୧୯୮୫

ସୂଚନା : ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ନିଜର ନିରାପତ୍ତାରକ୍ଷୀଙ୍କ ଗୁଳିରେ ୩୦-୧୦-୮୪ ତାରିଖରେ ନିହତ ହେବାର ଅବ୍ୟବହିତ ପରେ ରଚିତ।

**୨୩. ତମିର ସୂର୍ଯ୍ୟ ॥**

ରଚନାକାଳ : ୧୧-୨-୯୦

ପ୍ରକାଶିତ : ଝଙ୍କାର, ମେ-୧୯୯୦

ସୂଚନା : ଦକ୍ଷିଣ ଆଫ୍ରିକାର ଅବିସମ୍ବାଦୀ ନିଗ୍ରୋନେତା ଓ ମୁକ୍ତି-ସଂଗ୍ରାମୀ ନେଲସନ୍ ମାଣ୍ଡେଲାଙ୍କର ଦୀର୍ଘ ସତେଇଶ ବର୍ଷର କାରାବାସରୁ ମୁକ୍ତିଲାଭ ପରେ ରଚିତ।

## ୨୪. ବାଲିଆପାଳ ।।

ରଚନାକାଳ : ଅଗଷ୍ଟ, ୧୯୮୬

ପ୍ରକାଶିତ : ଇସ୍ତାହାର-୩୬, ଶାରଦୀୟ ସଂଖ୍ୟା-୧୯୮୬

ସୂଚନା : ବାଲିଆପାଳର କ୍ଷେପଣାସ୍ତ୍ର ଘାଟି ବିରୋଧୀ ଐତିହାସିକ ଗଣ-ଆନ୍ଦୋଳନ ସହ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ହୋଇ ସେ ଅଞ୍ଚଳ ପରିଦର୍ଶନ ପରେ ଲିଖିତ । ଇଂରାଜୀ ଓ ଅନ୍ୟ କେତେକ ଭାରତୀୟ ଭାଷାରେ ଅନୂଦିତ ହୋଇ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ।

## ୨୫. ଶହେଟିଏ : ସ୍ୱାଧୀନତା ।।

ରଚନାକାଳ : ୧୦-୮-୮୫

ପ୍ରକାଶିତ : ଝଙ୍କାର, ୩୯ଶ ବର୍ଷ, ବିଷୁବ ବିଶେଷାଙ୍କ-୧୯୮୬

ସୂଚନା : ୧୨-୮-୮୫ ରିଖରେ କଟକ ଆକାଶବାଣୀ ପକ୍ଷରୁ ଆୟୋଜିତ କବି ସମ୍ମିଳନୀରେ ପଠିତ ଓ ସ୍ୱାଧୀନତା ଦିବସ ଉପଲକ୍ଷେ ୧୪-୮-୮୫ତାରିଖ ରାତ୍ର ୧୦ଘଣ୍ଟାରେ ଓଡ଼ିଶାର ସମସ୍ତ କେନ୍ଦ୍ରରୁ ପ୍ରସାରିତ । ପୁନଶ୍ଚ ପାଟନା ଠାରେ ତା ୨୩-୧-୮୮ ରିଖରେ ଆକାଶବାଣୀ ଦିଲ୍ଲୀ ପକ୍ଷରୁ ଆୟୋଜିତ ଜାତୀୟ ସର୍ବଭାଷା କବିସମ୍ମିଳନୀରେ ପଠିତ ଏବଂ ସମ୍ବିଧାନସ୍ୱୀକୃତ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହୋଇ ସେ ବର୍ଷ ସାଧାରଣତନ୍ତ୍ର ଦିବସର ପ୍ରାକ୍‌କାଳରେ ଭାରତର ବିଭିନ୍ନ ଆଞ୍ଚଳିକ କେନ୍ଦ୍ରରୁ ପ୍ରସାରିତ ।

## ୨୬. ଭାରତ ଆବିଷ୍କାର ।।

ରଚନାକାଳ : ୧୦-୮-୮୯

ପ୍ରକାଶିତ : ଝଙ୍କାର, ଶାରଦୀୟ ବିଶେଷାଙ୍କ-୧୯୮୯

ସୂଚନା : ନେହେରୁ ଜନ୍ମ-ଶତବାର୍ଷିକୀ ଓ ସ୍ୱାଧୀନତା ଦିବସ ଉପଲକ୍ଷେ ୧୧-୮-୮୯ ତାରିଖରେ ଆକାଶବାଣୀ, କଟକ ପକ୍ଷରୁ ବାଲେଶ୍ୱରର ଗାନ୍ଧି ସ୍ମୃତିଭବନ ଠାରେ ଆୟୋଜିତ ରାଜ୍ୟସ୍ତରୀୟ କବିସମ୍ମିଳନୀରେ ପଠିତ ଏବଂ ୧୪-୮-୮୯ ତାରିଖରେ ଓଡ଼ିଶାର ବିଭିନ୍ନ ଆକାଶବାଣୀ କେନ୍ଦ୍ରରୁ ପ୍ରସାରିତ ।

## ୨୭. ଯେଉଁଠି ଯୁଦ୍ଧ ହେଉନା କାହିଁକ ॥

ରଚନାକାଳ : ୨୫-୧-୯୧

ପ୍ରକାଶିତ : ଝଙ୍କାର, ବିପ୍ଳବ ବିଶେଷାଙ୍କ-୧୯୯୧

ସୂଚନା : ୧୭-୧-୯୧ରିଖରେ ଆମେରିକା ନେତୃତ୍ୱରେ ଗଠିତ ବହୁଦେଶୀୟ ବାହିନୀର ଇରାକ ବିରୋଧରେ ଯୁଦ୍ଧଘୋଷଣା ଓ ଆକ୍ରମଣ ପରେ ରଚିତ । ବିଭିନ୍ନ ସ୍ଥାନରେ ଆୟୋଜିତ 'ଯୁଦ୍ଧବିରୋଧୀ ମିଳିତ କବିକଣ୍ଠ' ଆସରମାନଙ୍କରେ ଆବୃତ୍ତି । ଆକାଶବାଣୀ, କଟକ କେନ୍ଦ୍ରରୁ ୧୭-୨-୯୧ତାରିଖ ଅପରାହ୍ଣ ଘ:୩-୨୦ମି.ରେ "ତ୍ରିବେଣୀ" କାର୍ଯ୍ୟକ୍ରମରେ ପ୍ରସାରିତ ।

## ୨୮. ବିଦଗ୍ଧ ବୈଶାଖ : ୧୯୮୯ ॥

ରଚନାକାଳ : ୨୩-୫-୮୯

ପ୍ରକାଶିତ : ଅକ୍ଷପାଦ, ଶାରଦୀୟ ବିଶେଷାଙ୍କ ୧୯୮୯

ସୂଚନା : ତା ୨୨-୫-୮୯ ରିଖରେ ବାଲେଶ୍ୱରସ୍ଥ ଚାନ୍ଦିପୁରରୁ (I.T.R.) 'ଅଗ୍ନି' କ୍ଷେପଣାସ୍ତ୍ର ପରୀକ୍ଷାର ପ୍ରତିକ୍ରିୟାରେ ରଚିତ ।

## ୨୯. ମୋର ବୁଜିଦିଅ ଦୁଇ ଆଖି ॥

ରଚନାକାଳ : ଅକ୍ଟୋବର ୧୯୮୫

ପ୍ରକାଶିତ : ଧରିତ୍ରୀ, ଏକାଦଶ ଜନ୍ମ ବାର୍ଷିକୀ ବିଶେଷାଙ୍କ ୧୯୮୫

ସୂଚନା : କବି ପ୍ରସନ୍ନ ପାଟଶାଣୀଙ୍କ "ମୋର ଖୋଲିଦିଅ ଦୁଇ ଆଖି" କବିତା ପଢ଼ିବା ପରେ ରଚିତ ।

## ୩୦. ରକ୍ତ ହିରୁଚି ॥

ରଚନାକାଳ : ୨୮-୭-୯୦

ପ୍ରକାଶିତ : ଝଙ୍କାର, ଶାରଦୀୟ ବିଶେଷାଙ୍କ ୧୯୯୦

ସୂଚନା : ଦୂରଦର୍ଶନ, କଟକ କେନ୍ଦ୍ର ପକ୍ଷରୁ ସ୍ୱାଧୀନତା ଦିବସ ଉପଲକ୍ଷେ ୯-୮-୯୦ ତାରିଖରେ କଟକ 'ଶହୀଦ ଭବନ'ରେ ଆୟୋଜିତ ଏକ ବିଶେଷ କବି ସମ୍ମିଳନୀ (ମୁକ୍ତି-ଶତଦଳ କାର୍ଯ୍ୟକ୍ରମ) ରେ ନିମନ୍ତ୍ରିତ ଅତିଥି-ମାନଙ୍କ ଗହଣରେ ପଠିତ ଏବଂ ୧୫-୮-୯୦ ତାରିଖ ରାତିରେ ଦୂରଦର୍ଶନରୁ ପ୍ରସାରିତ ।

